କବି ବୈଷ୍ଣବପାଣିଙ୍କ ବିରଚିତ

# ଅଶ୍ୱମେଧପାଲା



ଶ୍ରୀ ପ୍ରାଣକୃଷ୍ଣ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ।

କଟକ ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

ଚତୁର୍ଥ ସଂସ୍କରଣ ।

Printed by Nityananda Sahoo

at the Arunodaya Press

CUTTACK

192୪

ମୂଲ୍ୟ ଟ ୦ ୬/ ଛଅଅଣାମାତ୍ର ।

ମୂଲ୍ୟ ପାଁଅଣା

# ଅଶ୍ୱମେଧଯଜ୍ଞ ସୁଆଙ୍ଗ ।

ସୂତ୍ର ଛାନ୍ଦ । ( ହରି ହରି ବୋଲ—ବୃତ୍ତେ )

ରାମ ରାମ ପଦ ଶୁଣି ହେ କୋବିଦେ ଯମଯାତନାକୁ ହର ହେ । ପ୍ରେମରେ ଶୁଣନ୍ତେ ଶ୍ରମଯିବ ତୁଟି ଭ୍ରମ ମନୁ ହେବ ଦୂର ହେ ।ପଦ। ସୀତାବନବାସ ଗୀତାଭଜନସ୍ତୁ ମୁଁ କରିବା ଅଶେଷ ପ୍ରଚୁର ହେ । ଜଳା-ଲକ୍ଷ ଛନ୍ଦ ଏହୁ ଅଳଙ୍କୃତ ରାମାୟଣ ସାରୋଦ୍ଧାର ହେ ।୧। ଜାତି ଦଶ ମୁଣ୍ଡ ଅର୍ପଣ ଅଯୋଧ୍ୟା ସେ ମାର୍ତ୍ତଣ୍ଡବଂଶଧର ହେ । ରାଜଛତ୍ର ମଣ୍ଡି ରାଜସିଂହାସନେ ପାଳନ୍ତି ପ୍ରଜାଙ୍କର ହେ ।୨। ଯାତା ପାଶେ ଜନେ ଗୁହାରି କରିଲେ ଦେବସନ୍ଧ ସୁନାସୀର ହେ । ଦଶସହସ୍ର ବରଷ ତେଜ ରାମ ରହନ୍ତେ ବୈକୁଣ୍ଠପୁର ହେ ॥ ସୀତା ସହିତରେ ନୋହିଲେ ବିଚ୍ଛେଦ ନ ଅସୈ ଋଙ୍ଗାଧର ହେ । ଏହା ଜନ୍ମ ନାରାୟଣୀଙ୍କ ପେଷିଲେ ଅଯୋଧ୍ୟାକୁ ବେଦବର ହେ ॥ ମନ୍ଥର କଣ୍ଠରେ ଜଟେ ଜଲେ ଦେବୀ ଛେଦିବାକୁ ମାୟାଚୋର ହେ । ଏଥିଠାରୁ ପଦ ଆରମ୍ଭ କରିବ ବଇଷ୍ଣବ ଦ୍ୱିଜବର ହେ ।୩।

ଊର୍ମିଳା ସୁକୀର୍ତ୍ତି ଓ ସୀତାଙ୍କ ପ୍ରବେଶ ଭଗ୍ନୀମାନଙ୍କ ଉକ୍ତି ।

( ସେବିରନ୍ତି ମୋର ସଙ୍ଗେ ଅସ—ବୃତ୍ତେ )

ଭଗିଣୀ ! ନ ପଡ଼େ କି ମନେ, କହ ଯିବ କେବେ ତପୋବନେ । ଋଷିପତ୍ନୀ ଦେଖି ଖୁସି ହେବ ବୋଲି ବୋଲୁଥିଲ ସବୁ ଦିନେ । ପଦ । କି କହିଲେ ସଖୀବ ଅଙ୍ଗ, ହେଜ ଟୋଲ ହୋଇବୁ ସୁଖୀ । ତେଣୁ ଦେଇ ଏକା ରହିବେ ଜାଣିଲେ ମଣି ଅନନ୍ତ ସଦନେ ॥ ରାମପ୍ରେମ ମନ୍ଦୁଛି କଣ, କେତେ ଦିନେ ଆସିବ ଫେରି । ଯିବ ନେକ ସଙ୍ଗତେ ଲକ୍ଷ୍ମଣ ତା ଇଙ୍ଗିତେ ଯେଉଁ ବିଜନଜଙ୍ଗଲେ ।୨। ସତ୍ୟକରି ବନବାସରେ, ଆସିଥିଲ ତାଙ୍କ ପାଶରେ । ମୁନିମନୋହାରୀମାନଙ୍କୁ ଜଣେ ଦେଖିବ

ରତନ ଦାନେ ।୩। ରାମ ସମ ପ୍ରେମ ସାଗର; ସତ୍ତ ଛନ୍ତି ତୁମ୍ଭ ହାତର,
ତେଣୁ ଭାରତର ରାଣୀ ବୋଲାଇବ ରହିଥିବେ ଦଅ ଯତନେ । ୪ ।



ସୀତା—ଯିବ ସଙ୍ଗେ ତପୋବନେ ଲକ୍ଷ୍ମଣ ଦେବର

ଊର୍ମିଳା—କେତେଦିନ ଶୂନ୍ୟଥିବ କୋଶଳ ନଗର ?

ସୀତା—ଆସିବ ଅଳକଟେ ଫେର ଋଷିପତ୍ନୀ ଦେଖି ।

ଊର୍ମିଳା—ନ ଦେଖି ତୁମ୍ଭଙ୍କୁ ପୂରିଯିବ ଅମ୍ଭ ଆଖି

ସୀତା—ସତ୍ୟକର ଅଛି ମୁଁ ବନବାସ ବେଳେ

ଊର୍ମିଳା—ରାଜରାଣୀ ହେଲେ ଯିବାପାଇଁ ତାଙ୍କ ଆଗେ

ସୀତା—ଧନରତ୍ନ ଦେଇ ତାଙ୍କୁ କରିବ ମୁଁ ତୋଷ

ଊର୍ମିଳା—ଧାଇଁଛି ମନ୍ଥରା ଈର୍ଷା ହୋଇ ହସ ହସ ?

ସୀତା—ଅହିତ ବାହାର ଏବେ କରିବ କୌତୁକ

ଊର୍ମିଳା—ସେହି କଥା ନାହିଁ ତାର ନ ଗଲା କାଳକ



ମନ୍ଥରା ପ୍ରବେଶ । ( କହ କେଉଁଣେ ଅଛୁ—ବୃନ୍ଦେ )

କି କରୁଛ ବସି, ଏଥି ହସି ହସି ମୋର ନାତୁଣୀପଲ । ସାଡି ସାଧ୍
ଦାସୀ ପରିବାରେ ଘେରି ରହିଛନ୍ତି କେତେ ଲାଗିଛି ଖେଳ । ସଦ
କେତେଦିନ ହେଲା ଦେଖି ନାହିଁ ସୀତା କହ ଫେଇ ତୋର ସବୁତ
ଭଲ । ମାନିଲେ କଥା ଏ କହିବ ଲୋ ମାଆ ଯେବେ ତୁ ତାହାକୁ ନ
ମଣୁ ସଲ ।୧। ଶୁଣିଛି ଏତେର କୁଡଆ ଭିତରେ ଛଡ଼ାଛଡ଼ି ସଙ୍ଗହେଉ
ନ ଥିଲ । କର ଧରାଧରି ଦଅର ଦୁଆରେ ନ ମାଡ଼ଇ ଲାଜ ବଗ୍ଧଅ
ଫୁଲ ।। ଦଶମାସ କେଉଁଠେ ରାବଣ ସଦନେ ମୁରୁଛି ବସିଲୁ ସେ କଥା
ବୋଲ । ଲେଖିଲୁ ତା ମୂର୍ତ୍ତି ଦେଖିଲେ ମାରନ୍ତି ପାଦଘାତେ ଦ୍ୟନ୍ତି
ଫିଙ୍ଗାଇ ଗାଲ ।୩। ଦଶଶିର ତାର କେମନ୍ତ ପ୍ରକାର ବଂଶକର ବଂଶ
ନନ୍ଦନ ଭ୍ରଲ । ବଇ କହି ଗୀତେ ଖଡ଼ଧର ହାତେ ଆଙ୍କ ଲଙ୍କପତ
ଅଲ୍ପତ ଭୁଲ । ୪ ।

ସୀତାଙ୍କର ଗୀତ । ( ପ୍ରେମ ସରସୀରେ—ବୃତ୍ତେ )

ଦେଖିନାହିଁ ତାକୁ ଲେଖିବ କେମନ୍ତେ ଅଣ କହୁଛୁ ତା କାହିଁକି ଗୋ । ଶୁଣଇ ରଜତ ପଡ଼ିଲେ ତା କଥା କ୍ଷୀରଯାନ ଦେଇ ଅହିକି ଗୋ । ପଦ । ଲଙ୍କାଙ୍କୁ ଭାବଲେ ଥରେ, ଶଙ୍କା ଜାତ ହୁଏ କାତରେ ଚରିତେ ଅଦ୍ଭୁତ ଲାଗେ ମୋ ଦେଖି କି ଗୋ । ୧ । ମାଙ୍ଗ ଏତିକି ଜାଣେ ମୁହିଁ, ପଥେ ରଥେ ମୋତେ ହରିନେବାକାଳେ ଜଳେ ଦେଖିଛି ତା ଘୃଣିକି ଗୋ । ୨ । ତାହା ଅଙ୍କୁଛ ଦେଖ ଏବେ, ବଇଷିବ ଭାବେ ନଷ୍ଟକର କଷ୍ଟ ଏ ପାପୀ ବଦନ ଗୃହିକି ଗୋ । ୩ ।



ମନ୍ଥରାର ଗୀତ ( ଢଅ ଢଅ ନନ୍ଦରାଣି ଗୋ—ବୃତ୍ତେ )

ଦେଖି ଏହି ରୂପକୁ ସୀତା, କେମନ୍ତେ ଦେହ ତୁ ରହିଲୁ ଧରି । ବଡ଼ ବଡ଼ ଦାନ୍ତ ଛଡ଼ପରି ହାତ ନଦେଖି ଚକ୍ଷୁ ତୋ ନ ଗଲା ଥରି । ପଦ । ଦଶମୁଣ୍ଡ କୋଡ଼ିଏ ବାହା, କେଉଁ ଧାତା ଗଢ଼ିଲା ଏହା । ଜଳ ଜଳ କରି ଗୃହିଁଲା ବେଳେ ଯେ ଦିଶୁଥିବ ଜଳ ପୋଖରୀ ପରି । ୧ । ସ୍ବଦେଶ ପଇତପୁର, ଜଟେ କେଉଁ ନ ଥିବେ ନର । ତ୍ରିଭୁବନ ଥିବେ ଦଇତୁଣୀ ପୁଣି ଖମ୍ବପରି ଲମ୍ବହାତ ଉଧାର । ୨ । ଅରେ ଅରେ ରାକ୍ଷସ ଦୁଷ୍ଟ, ନାତୁଣୀକି ଦେଲୁ ତୁ କଷ୍ଟ । ଯାହା ଥିଲା ଦୃଷ୍ଟ ହୋଇ ଗଲା ନଷ୍ଟ ବଇ କଷ୍ଟେ ପଦ ରଚେ ବିପ୍ର । ୩ ।

ସୀତା ଅଛ କାହିଁପାଇଁ ମୋତେ ଧାରୁଅଛ ନିଦ ।

[ ତଳେ ପଣନ୍ତପାର ସୀତା ଶୟନ ]

ମନ୍ଥରା—ଯାଅ ଗୋ ନାତୁଣୀମାନେ ଶୁଭେ ରାମପଦ ଶବ୍ଦ ।

( ରାମଙ୍କର ପ୍ରବେଶ ଭଉଣୀମାନଙ୍କର ପ୍ରସ୍ଥାନ )

( କାହିଁ ପାଇଁ ଭାଇ—ବୃତ୍ତେ )

ସୁଧାଭାଷି ! ଏହି ବସୁଧାରେ କିପାଁ କରୁଛୁ ଶୟନ ରେ । ଶରଧାରେ ବାଧା ଦେଇଛି କହ କେ ମୋ ଅଙ୍ଗ ବନ୍ଦନ ରେ । ପଦ । ଶଶିହାସି

ଅସି କ୍ଷ ନମନ୍ତ୍ରେ ନଦ୍ରା ଡାକିଲା ନୟନ ରେ । ବାତୁଳୀ ପରି ଯା ଭୂଳୀ ଷଯ୍ୟା ତେଜ୍ୟା କଲୁ ଜ୍ଞାବଧନ ରେ । ୧ । ଧୀର ନାମ ବନ୍ଧୁ ଅଧୀର ହୋଇଲୁ ଏକ୍କ ତୋ ବିଧାନ ରେ । ହେଲୁ ଏତେ ସର ବଣା ଏଣୀପର ଚଞ୍ଚଳା ରଖି ମନ ରେ । ୨ । ଶବଂଶଶମୁଖି ଅପୂର୍ବ କ୍କ ହେଲା ଅଯୋଧ୍ୟାଭୁବନରେ । କୃଷ୍ଣଜହାସିନୀ ହଠେବୋଲ ବଇଷ୍ଣବନନ୍ଦବେଦନରେ



ମନ୍ଥର ଗୀତ । ( ଶୁଣ କଶ୍ୟପ ତନୁଜରେ—ବୃତ୍ତେ )

ରାମ ଦେଖ ଏଥେଁ ଆସେ ରେ, ଶୋକ ଯାହା କରୁଛନ୍ତି ଅଜ । ଲେଖି ବଂଶଅଛି ରୂପ ପଙ୍କଜାକ୍ଷୀ ତା ଅଙ୍କେ ଶୋଭନ୍ତି ମଙ୍କେ ।ପଦ। ତାଙ୍କ୨ ଯେତେ ଅଙ୍କରେ କି ହେବ ଅଛିତ ନୟନ ବୁଜ । ଅସୁରରଭର ପାଶୋର କ ଯିବ ଭରଇ ତା ଭବରାଜ । ଅକଳଙ୍କ କୁଳେ କଳଙ୍କ ବୋଳଲା ରଣୀରୂପ ବୁଝି ମୁଝି । ମୂର୍ଣ୍ଣେକେ ବାଟ ଗୃହରୁ କେମନ୍ତେ ଲାଉରେ ମରବୁ ଗନ୍ତି । ୨। ଏମନ୍ତ ଭ୍ରରପ ମୁଖ ଦେଖି ଦୁଃଖ କେମନ୍ତେ ଯାଉଛି ହଜ । ଦୁର୍ମନାଙ୍କୁ ଯେତେ ପଗୁରଲେ ମନକଥା ପାରବ କ ବୁଝି ॥ ଯେବେ ଭଲ ଗତ ଅଛି ତୋତେ ନାହିଁ ମାଇକ ଗ୍ରୀଡ଼ରେ ଅଜ । ହେଉଛି ନେଲାଣି ହରିକ୍ଷ ଭଣି ମୋ ବାଣୀକି ଥାଅ ହେଜ ॥୪



ରାମ ପଂଲ୍ଲଜଳ ଦେଖି ଗୀତ ( ରାଷପୀବୁଦ୍ଧିଧର—ବୃତ୍ତେ )

କୁଳ ଙ୍ଗନା ମୋ କୁଳେ କଳଙ୍କ ବୋଲିଲୁ ଲୋ । ମୂଳ ଓପାଡ଼ ମୋ ଦମ୍ଭଦ୍ରମେ ଝାଳିଲୁ ଲୋ । ପଦ । କିଣାଇଣ ଖେଦବୀଜ, ବୁଣାଇଲୁ ଚାପରାଜ । ଶୁଣାଇଲୁ ନିନ୍ଦା ଧ୍ୱନୀ ତୋଳିଲୁ ଲୋ । ୧ । ଜଣି ରାବଣ ଯଶୋଜ, ଅଣିଥିଲି ଶତବାର, ନେଇ ମୋ ବୁଦ୍ଧିବିବେକ କିଣିଲୁ ଲୋ ॥ ହୋଇ ଏହେ ହେସ୍ତା ନାରୀ, ଭ୍ରଷ୍ଟାହେଲୁ କ ବୈଭର । ମୃଗ ତୃଷ୍ଣବାର ଶିରେ ଢାଳିଲୁ ଲୋ । ୩ । ଦାଅ ସାଧିଲା ଦଇବ, ଅଉ ନ ପାଇବୁ ଠାବ । ବଇ ଭୁଷ ଭମେ ବଷ ଗିଳିଲୁ ଲୋ । ୮ ।

ରାମଙ୍କର ଅନ୍ଧାର ବିଜେ ଧୋବା ଧୋବଣୀଙ୍କର କଳି ।

( ଗୁଲ ଗୁଲ ଗୁଲ ଘଣ୍ଟି ଲେ—ବୃତ୍ତେ )

ଧୋବା—ରଖି ଦେତୋ ହରଯାପଣ ଭୁଅର ଯା ଅନ୍ନ ଘରୁ ମୋହର
ଧୋବଣୀ—ବୁଝି ସୁଝି ମୋତେ ମାଅରେ ନଲଠା କାଲି
ମଦନଶା ହେବ ବାହାର । ପଦ ।
ଧୋବା—ଦରକାର ତୋଠାରେ ନାହିଁ, ଛଅାରଣ କହୁ କିପାଇଁ ।
ଧୋବଣୀ—ବଗ୍ୟୁରନ୍ତୁ ଯାହା ପଣ୍ଟୁର ଅଅନ କେ କହୁବ ଏତେ ଗୁଣ
କାହାର ॥

ଧୋବା—ଗଲାଦନ ଗ୍ରତରେ ଯାଇଁ, କେଉଁଠାରେ ରହିଲୁ ଭୁହ ।
ଧୋବଣୀ-ଥିଲି ବାପଘରେ ଭାଇଙ୍କ ପାଖରେ ଏଥିରେ କି ଜାତ ଯିବରେ
ମୋର ॥

ଧୋବା—ଏହି କଥା ଶୁଣିଲେ ଜାତି, ବସାଇଣ ନ ଦେବେ ଭାତ ।
ଧୋବଣୀ-ବୋପାଘରେ ଥିଅ ଅସତୀ କି ସତୀ ପାଣ୍ଡୁ ଯିବ ଯିବା ସ୍ୱଜନ ଦ୍ୱର
ଧୋବା—କାଳପାଣେ ହାତର ବଳ; ନ ଖଟିବ କୌଣସି କଳ ।
ଧୋବଣୀ—ଦଶମାସେ ରାମ ସୀତାକୁ ଆଣିଲେ ତାଙ୍କଠେଇଁ ଭୁଲ
ଦେଖୁ ବାହାର । ୪ ।

ଧୋବା—ରଜାବୋଲି ସଜାକୁ ଡ଼ର, ନ କହନ୍ତି କେହି ବାହାର ।
ଧୋବଣୀ—କାଲି ବୁଝି ସୁଝି ହେଲେ ଦଅ ଛାଡ଼ ବଳ କରେ ରାମ
ପାଦେ ଜୁହାର । ୫ ।



ରାମଙ୍କ ଗୀତ । ( ପଢ଼ିଲା କପାଳ ରେ—ବୃତ୍ତେ )

ଶୁଣିଲି କି କଥା ଅନ୍ନ ଶୁଣିଲି କି କଥା ; ଶୁଣି ଶୁଣି ତାହା ଚମକ ଭ୍ରମି ଯାଉଛି ମୋ ମଥା । ପଦ । ମୀରଚନ୍ଦ୍ରଙ୍କ ଦୁହିତା, କରତାଳିକୋ ଗ୍ରତ । କେମନ୍ତେ ପାଇବ ରାମ ବନେ ନିବାସିତ ସୀତା ॥ ନାସିକିଙ୍କଲେ ବିଶ୍ୱାସ; ନଷ୍ଟ ହେବ ବିନାଶ । ଶେଷେ ନରକରେ ବାସ ଲଭୁଛି

ଲେ ବଧାତା । ୨ । କୁଳଦାରମଣୀ ଲୋକେ, ରଖଇ ଯେ କାମ ଲୋଭେ । ରଷା ନାହିଁ ତା'ର ଭବେ ଯେଉଁ ନେ ଇକ ଛଦ୍ମାଛଟା । ୩ ଅନ୍ତଃପୁରରେ ପ୍ରତ୍ୟକ୍ଷ, ପ୍ରମାଣ ମିଳଲା ଲକ୍ଷ୍ୟ । ରଜକ ତର୍କରେ ସାକ୍ଷ ଲଇ ରଚଇ କବତା । ୪ ।

---

ଶ୍ରୀରାମଙ୍କର ଅନ୍ତଃପୁର ପ୍ରାଙ୍ଗଣରେ ଶୟନ ଓ ପ୍ରଭାତୁ ଉଠି ଲକ୍ଷ୍ମଣଙ୍କୁ ଡାକି କହିବାର ।

( ଗୋକୁଳାନନ୍ଦଚନ୍ଦ୍ରଙ୍କ—ବୃତ୍ତେ )

ଲୋକ ଅପବାଦୁଁ ପାର, କର ସୁମିତ୍ରାକୁମର । ବନେ ନେଇ ଅସୀତା ତେବେ ଚିନ୍ତା ଯିବ ଦୂର । ପଦ । ଅଜେୟ ଅଯୋଧ୍ୟା ପୁରୀ, ଅଯଶ ଘୋଷେ ମୋହର । ରଜକ ରଜକୀ ବାଣୀ ହୃଦସ୍ଥ ସଦାରେ ମୋର । ୧ । କାଲି ଅନ୍ତଃପୁରେ ଯାଇ, ଦେଖିଛି ଭାଇ ମୋ ନେଇ । ଲେଖି ଲଙ୍କନାଥ ରୂପ ଶୋଇଛି ତା ଅଙ୍କପର । ୨ । ତାକୁ ମୋତେ ଦେବାକୁ ପଣ । ଯାଉ ପଛେ ଏ ପରାଣ । ନ ରଖିବ ସୀତା ଜାଣ ଏହୁପଣ ମୋର ସ୍ଥିର ॥ ପ୍ରଭୁ ବୋଲୁଛ ସେ ମୋତେ । ତପୋ ବନେ ଯିବା ଅର୍ଥେ । ଏହୁ ବାଣୀ ଭଣି ନଅ ପାଣି ବଇଷ୍ଣବଗୀର ॥

---

ଲକ୍ଷ୍ମଣଙ୍କର ପ୍ରବୋଧନା । ( ସଜ ସରସିଜ ଦୃଶାରେ—ବୃତ୍ତେ )

ଦୂଷଣ ଜଗାଏ ଶୁଣି ବନ୍ଦ, ରଘୁନାଥ ତୁମ୍ଭର ଏ ଭଷା । ବଶାଳ ଭାରତ ଈଶ୍ୱର ବୋଲଇ କିପାଁ କରନ୍ତେ ବନ୍ଦ ହୁଂସା । ପଦ । ଯେ ଜନକଜେମା କନକପ୍ରତିମା ନାହିଁ ତହିଁ ହେଲ ମିଶା । ଘାର ରଜକ ରଜକୀ ବାଣୀ ଶୁଣି ବୃଥା ବନେ ଦଅ ବସା । ୧ । ଦେଖିନାହିଁ ପର ପୁରୁଷ ନୟନେ ଯେ ରମଣୀଶିରଭୂଷା । ତାକୁ ଅପବାଦ ଦେବ କାର ସାଧ୍ୟ କାଂସା କି ପାଲଟେ ଶୀସା । ୨ । ଯେବେ ନ ରଖିବ ନିକଟେ କାଟକଣେ ଭଗ୍ନ ହେଉକଦୃଶା । ନେଇ ଅନ ସ୍ଥାନେ ରଖାଅ ଯତନେ ପୂର୍ଣ୍ଣ ହେଉ ମନଆଶା । ୩ । ଦାଶ

ଦୋଷ ମାଗିଥିଲେତ ଜନକ ମନେ ନ ପଡ଼େ ସହସା । ରଖ ଏ
ମାଗୁଣି ବଇଷ୍ଣବ ଭଣି ଏ ଦାସ ତୋ ପାଦ ଦଶା । ୮ ।

ରାମ—ଚଳାନା ଚଳାନା ଭାଇ ବଳା ନାରେ ମୋତେ
ଲକ୍ଷ୍ମଣ—ଏଡ଼େ ନିଦାରୁଣ ଦୟା ମାୟା ନାହିଁ ଚିତ୍ତେ
ରାମ—ଡ଼ାକି ଅଣୁ ଦୂତେ ପେଷ ସୁମନ୍ତ୍ର ମନ୍ତ୍ରିକି
ଲକ୍ଷ୍ମଣ— ସେ କିସ କରିବେ ଆସି ପ୍ରଭୁଙ୍କ କଟକି
ରାମ—ସଜାଇଣ ରଥ ପଥେ ନେବ ତପୋବନେ
ଲକ୍ଷ୍ମଣ—ନାହିଁ ଦୋଷ ଯାଉଛି ମୁଁ ଜାନକୀ ବଚନେ
ରାମ—ଚଳ ଲକ୍ଷ୍ମଣ ଏକ୍ଷଣେ ବିଳମ୍ବ ନ କର
ଲକ୍ଷ୍ମଣ—କପଟେ କାନନେ ନେବ ଭୁଲାଇ କିଙ୍କର

ଲକ୍ଷ୍ମଣଙ୍କର ପ୍ରସ୍ଥାନ ।

ଲକ୍ଷ୍ମଣ ଦୂତକୁ ଡାକିବାର ଦୂତର ପ୍ରବେଶ ।

ରାମ—ଡ଼ାକ ଅଣ ମନ୍ତ୍ରୀଙ୍କ ତୁ ଦୂତ ସାଜିଦେବ ରଥ ଅଶ୍ୱଯୋଚ,
ତପୋବନେ ଜାନକୀ ଲକ୍ଷ୍ମଣ ଘେନି ଯିବେକ ତୁରିତ ।

ଦୂତ—ଯେ ଆଜ୍ଞା—ଲକ୍ଷ୍ମଣସୀତାଙ୍କପୁରେ ପ୍ରବେଶ, ସୀତାଙ୍କର ଗୀତ ।

( ନଅ ନଅ ସୁତକୁ ତୁମ୍ଭର ଦେ—ବୃତ୍ତେ )

କିପାଁ ଆଜ ବଜେଭୁ ମୋ ଫୁଟ ଦେ ସଉମିତ୍ରି । ପଦ । ସୀତା
କଥା ଏତେବେଳେ, ପଡ଼ିଲା କି ତୁମ୍ଭ ମନେ । ଦେଖିଲି ସନ୍ଦେହ ହେଲା
ଦୂର ଦେ । ୧ । ବନଗହନେ ଏକାକୀ, ଥିଲେ କର ପକ୍ଷିକୁଟୀ ।
ଛୁଟିଛ କି ସେ ଭାବ ହୃଦର ଦେ । ୨ । କେତେ କୁବଚନ ମୁହିଁ,
କାନନରେ ଅଛି କହି । ଯାଇନାହିଁ ତାହା କି ପାଶୋର ଦେ । ୩ ।
ବଲ ଭାଷଇ କୀତରେ, ଛିଡ଼ା ହୋଇଛ କାତରେ । କି ନିମନ୍ତେ ନ
ଧଅ ହରିବ ଦେ । ୪ । 

ଲକ୍ଷ୍ମଣଙ୍କ ଗୀତ । ( ଦାସୀବୃନ୍ଦରଚା ଲେଖା—ବୃତ୍ତେ )

ଦୋଷ ଦଅନା ଦେବି ବନ୍ଦନ ମାତ ଦାସରେ ମୋର । ଅସ ବନବାସେ
ଯିବ ସଙ୍ଗତେ ମୋର । ପଦ । କାନନେ ଯିବା ମାନସେ କହୁଛି ଭାଇଙ୍କ

ପାଶେ । ଦେଇଛନ୍ତି ମୋଶିରେ ସେ ଅଦେଶ ଭର । ୧ । ରଥେ,ବସାଇ ବହନେ ଗ୍ରହବ ମୁଁ ତପୋବନେ । ଇଙ୍ଗିତ ନ ମଣ ତବ ଭୃତ୍ୟର ଶୀର । ୨ । ଅଜ୍ଞ ପୂରବ କାମନା ସୁଗ୍ରୁଗଜଗମନା । ସାଜିଛି ସୁମଣ୍ଡ ପୁଷ୍ପକ ରଥବର । ୩ । ମୁନିପତ୍ନୀ ଦେଖି ସୁଖୀ ହୁଅ ଅଯୋଧ୍ୟା ଫେରିବ । ବିଳମ୍ବ ନ ସହେ ଭୂଷ ରଘୁବର । ୪ ।



ସୀତା—ସଉମିତ୍ରି ! ଏତେଦିନେ ଅଦେଶ ହୋଇଲା ପ୍ରଭୁଙ୍କର
ଲକ୍ଷ୍ମଣ—ଯାହା ଜାଣିଥିଲ ପାଶେ କହିଲ କଙ୍କର
ସୀତା—କିଁ ଅନନ୍ଦନ ଅଜ୍ଞ ଦେଖିବି ମୁନିଙ୍କ ପତ୍ନୀ ନୟନ ପୂରାଇ
ଲକ୍ଷ୍ମଣ—ପ୍ରଭୁ ଭଲ କହିଲେ ମୋତେ ପାଶେ ଯାଇ
ସୀତା—ଭଲ ତେବେ ରଥେ ବେଗେ କରିବା ବିଜୟେ
ଲକ୍ଷ୍ମଣ—ରେ ନିର୍ଲଜ୍ଜ ପ୍ରାଣ ପିଣ୍ଡେ ଅଛୁ ଏତେକ୍ଷଣଯାଏ
ସୀତା—କି ଭାବୁଛ ଚିତ୍ତେ ହେ ଦେବର ?
ଲକ୍ଷ୍ମଣ—ଅଜ୍ଞ କି ଭାବିବ ତେଜ ନାତ ଅଯୋଧ୍ୟାନଗର



ରଥେ ବସି ଦୁହିଙ୍କର ଗମନ ଓ ସୀତାଙ୍କର ଅମଙ୍ଗଳ ଦର୍ଶନ ଗୀତ ।

( ସାରବର ହର ମୋର ଅପମାନ—ବୃତ୍ତେ )

କିପାଁ ଦେଖୁଅଛି ନେହେ କୁଲକ୍ଷଣମାନ ପୁନେଃ । ରଥ ଏଥି ଚେଷ ହେ ସାର ଲକ୍ଷ୍ମଣ । ଘ୍ରୁ । ଦକ୍ଷିଣେ ଶୃଗାଳ ବାମେ ସର୍ପ । ଫଣା ଟେକି ଗର୍ଜେ ବନ୍ଧ ଦର୍ପ । ଦକ୍ଷବାହୁ ଦକ୍ଷନେତ୍ର ନାଚେ ପୁଣ ॥ ହୋମେ କାକଦ୍ୱେକ ମୋର ଅଗେ, ନ ଦେଖିବ ମୁଁ ଅଯୋଧ୍ୟା କେବେ । କୁହେ ହୃଦୟ ହୁଏ ଏ ଭାବ ଜାଣ ॥ ବେଳୁଁ ବେଳୁଁ ଦେଖେ ନୂଆଭାବ । କି ହେତୁ ନ ଚଳେ ପଦ ତବ । ନେତ୍ରୁ ଝରେ ନୀରଧାର ଅନୁକ୍ଷଣ । ୩ । ମରନ୍ତୁ କହାଇବ ବେଳୁଁ ଯାଉ, ଏହି କଥା ସାର ଦେଖି ତୋର । ବଇଶ୍ରବ କେଣେ ଭୂଷ ତା କାରଣ । ୪ ।

## ଲକ୍ଷ୍ମଣଙ୍କର କ୍ରୋଧ ଉତ୍ତର ।

( ବେଗେ ଯାଅ ଯାଅ ଲଙ୍କାପୁର—ବୃତ୍ତେ )

ମାତ କହୁଲେ ସମ୍ଭବ ନାହିଁ ଏ ମନ୍ତ୍ର । କହନ୍ତେଣ ଦୋଷୀ ହେବ ଷଣ୍ଢିହାପି ନ କହୁଲେ ପଦେ ଦ୍ରୋହୀ ଗୋ ।ସଦା ଅଯୋଧ୍ୟାର ଅଣା ତେଜ ଗୋ ସହସ ଏ ଦଶା ଲହୁଛି ବହୁ । ଜନ ଅପବାଦ ଜନକ-ନନ୍ଦନା ପ୍ରଭୁ ନ ପାରିଲେ ସହୁ ଗୋ ॥ ଅଦେହି ଏ ଦାସେ ଦେଲେ ବନବାସେ କେବେହେଁ ସେତ ନେବେ ନାହିଁ । ଦୟାମୟ ନାମ ବହୁଣ ନିର୍ଦ୍ଦୟ ଭାବ ବହୁଲେ କପାଇଁ ଗୋ ॥ ଯେତେ ବୁଝାଇଲି ମୋ ଭାରତୀ ଢ ଶୁଣିଲେ ଭାବଗ୍ରାହୀ । ବିରିଷ୍ଟ ଭ୍ରଷ ଷନ ମମ ଦୋଷ ତପୋବନ ଯତେଶ ଏହୁ ଗୋ ।୩ ।

—✻—

## ସୀତା ହୃତଜ୍ଞାନ ହୋଇ ରାମଙ୍କ ପ୍ରତି ଉକ୍ତି ।

( ସଜ ସରସିଜ ଦୃଷ୍ଟା ରେ—ବୃତ୍ତେ )

ଆହା ରଘୁବଂଶ ନାଥ ହେ, ଏତେ କଥା ଥିଲା ତୁମ୍ଭ ଚିତ୍ତେ । କଙ୍କସି କି କରିଥିଲି ପଦେ ଦୋଷ ସେତେ ତେଜିଲ ବନସ୍ତେ ।ସଦା ଅହ୍ନା କହିବାକୁ ସାହା ନାହିଁ କେହି ସାହା ଦେବ କେହୁ ମୋତେ । ନାହା ହୋଇ ଏହା କରିବାକୁ ସତ ବଳିଲା ବୁଦ୍ଧି କେମନ୍ତେ । ୧ । ମଧୁରାଳାପୀ କହେ ଛୁଇଁ କୁଳଧାରା ସ୍ୱଲପ କଲ ଅଗ୍ରତେ । ଏଡ଼େ ନିଦାରୁଣ ହୃଦୟ ଟବାଲଣ ଜାଣିତ ନ ଥିଲି ସତେ । ୨ । କାନ୍ତ ଶ୍ରୀଚରଣୁଁ ଅଟନ ଥିଲେ ମନ ଲକ୍ଷ୍ମଣ କହୁଛି ତୋତେ । ନିଟଷ୍ଟ କୁମ୍ଭୀ-ପାକ ନରକେ ପଡ଼ନ୍ତି ଦେଖିବେ କୃତାନ୍ତ ଦୂତେ ।୩। ପାଷ୍ୱଥିଲ ସବେ ବହି ଏକାଠେ ଏହୁକଥା କେ ଅହୁତେ । ଗର୍ଭେ ପାଷମାସ ହେଲେ ବନବାସ ଦେବ ବଇ ଦ୍ରୃଷେ ଗୀତେ । ୪ ।

ସୀତା—ଲକ୍ଷ୍ମଣ ରେ ! ଜଗନ୍ତ୍ର ପ୍ରାଣ ରକ୍ଷଣି ଏହୁ ଅର-ଣ୍ୟରେ, କିନ୍ତୁ ଅସ୍ୱହତ୍ୟା ହେବ ଜାତେ ଭୟ, ଯାଇ କହୁବୁ ନମ-ନାଥ ଅଟେ, ତାଙ୍କପର ମୋତେ ଜନେ ଜନେ ନିତ୍ୟ ପନ୍ଥ, ମୋହ ପରୁ ତାଂ କାଳେ ନ ନିତ୍ୟ ଅପଷ୍ଟା ।

ଲକ୍ଷ୍ମଣ—ମାତ ! କେମନ୍ତେ ଦେଖୁଛି ସୁତ ତୋର, ନ ଧରିବ ଦୋଷ କେତେଭି ଏ ପାଦଦାସର (ପାଦେପଡ଼ି) ମାଗୋ ! ଯେବେ ତୋ ଚରଣେ ଥିବ ଦୋଷୀ କଲେ ମାର୍ଜ୍ଜନା କରିବ ଏ ଲକ୍ଷ୍ମଣ ।

( ଲକ୍ଷ୍ମଣ ରଥବେଗେ ପ୍ରସ୍ଥାନ ।)

ସନ୍ଧ୍ୟା ହୁଅନ୍ତେ ସୀତାଙ୍କ ରୋଦନ ।

( ଅରେ ମନ୍ଦଦଇବ—ବୃତ୍ତେ )

ଅରେ ଅନ୍ଧ ବିଧାତା, ସୀତା ହୋଇଥିଲି ଏବେ କଲୁ ପତାରେ । ପଦ । ସୁବର୍ଣ୍ଣ ପ୍ରତିମା ହୋଇ; ଅଙ୍ଗାର ଦେଲୁ ରେ ବନ୍ଧ । ବିନାଦୋଷେ ନିର୍ବାସିଲେ ଜଗତଜିତାରେ ! ୧ । ଯୁବାକାଳେ ଖଣ୍ଡିଲେ ଦଣ୍ଡ, ଦେଲୁ ରେ ବନ୍ଧଦୁର୍ଦ୍ଦଣ୍ଡ । ସେ ଭ୍ରୁବ ଭ୍ରିବ ହୃଦରୁ ହଜାଇ ଚେତା ରେ ॥ ଗଣ୍ଡା ଗଣ୍ଡକ ବଶନ, କୁରଙ୍ଗ ଶାର୍ଦ୍ଦୂଳ ସିଂହ । ନିଅ ଦାସୀ ପ୍ରାଣ ବଇ ରଚେ କବିତା ରେ । ୩ ।



ବାଲ୍ମୀକି ଶିଷ୍ୟଗଣ ସହ ହୋମକାଠ

ସଂଗ୍ରହ କରୁ ରୋଦନ ଶୁଣି ଶିଷ୍ୟଙ୍କୁ ପଗୁରିବାର ।

ବାଲ୍ମୀକି—ଶିଷ୍ୟଗଣେ ! କାହାର ରୋଦନ ଧ୍ୱନି ଶୁଣେ ଏ ବନରେ

ଶିଷ୍ୟ—ଗୁରୁଦେବ ! ଜଣାଯାଏ କୋକିଳ କି ବୁରୁଅଛି ପଞ୍ଚମତାନରେ

ବାଲ୍ମୀକି—ବାମାକଣ୍ଠ ପରି ମୋତେ ଯାଉଅଛି ଜଣା ।

ଶିଷ୍ୟ—ନା ! ବନଦେବୀଗଣେ ନିଶ୍ଚେ ବାଉଛନ୍ତି ବୀଣା

ବାଲ୍ମୀକି—ଏହ୍ବତ ଅନୁସରି ଗଲ ତା ନିକଟ ।

ଶିଷ୍ୟ—କିଏ ତୁ ରମଣୀ କହି ପାଉ ବଚନ କଷ୍ଟ ।



ବାଲ୍ମୀକିଙ୍କ ଗୀତ କାହିଁ କି କରୁଣ ଧ୍ୱନି—ବୃତ୍ତେ )

କାନ୍ଦୁ କିଁଆ ବନଜାଣି ବନରେ, କାନ୍ଦୁଛି ତୋ ସ୍ୱର ବୀଣାସ୍ୱନରେ, ପଦ । ଇନ୍ଦୁମୁଖୀ ତୁ କାହାର, ଅଛୁ କାହିଁ କଣ୍ଠହାର । ଅଙ୍ଗରଙ୍ଗ

ଥିକ୍କାରେ କାଞ୍ଚନରେ ।୧। ପିତା ମାତା ନାମ କହ, କହୁ ମୋ ସଖସ୍ମୃ ନାଶ । ମୁଁ ଅଟେ ବାଲ୍ମୀକି ବାରେ ଚନ୍ଦ୍ର ରେ । ୨। କି ହେଲୁ ଏସନ ଦଶା, କେଉଁ ଅଟେ ରସାଳସା । ଏକାକିନୀ ବଜନ କାନନରେ ।୩। ବତାଇଲେ ପ୍ରତିକାର, କରିବା ଅମ୍ଭେ ନିକର । କହକି ଧଅ ଅଭସ୍ମୃ ଦାନରେ । ୪ ।



ସୀତାଙ୍କ ଉକ୍ତି-( ମାନଙ୍କର ଦାନଧନ-ବୃତ୍ତେ )

ମୋ ଦୁଃଖ କାହାଣୀ ବାରେ ଶୁଣ ତପମଣି ହେ । ରାମଚନ୍ଦ୍ରଘରଣୀ ମୁଁ ଜନକଦୁଲଣୀ ହେ ।ପଦ। ଶ୍ୱଶୁର ଅଃ ନ୍ତ ମୋ ଅଯୋଧ୍ୟାନରମଣି ହେ। ଜନମ୍ ଦୁଃଖିନୀ ମୁଚ ଜାତ କୁଲକ୍ଷଣୀ ହେ ।୧। ପିତା ଦେଲେ ସୀତା ନାମ ବେଳକାଳ ଜାଣି ହେ । ପିତା ହେଲ ମୋ ମୁଖ ନ ଦେଖିଲେ ପୁଣି ହେ ।। ଲୋକ ଅପବାଦ ପଡ ଶ୍ରୁତିଯୁଗେ ଶୁଣି ହେ । ଦେବର ଲକ୍ଷ୍ମଣ ବନେ ତେଜିଗଲେ ଆଣି ହେ । ୩ । ଯେ ଯେତେ କହିଲେ ନ ଶୁଣିଲେ କାହା ବାଣୀ ହେ । ରଘୁନାଥ କିଙ୍କରାକି ବଇଷ୍ଟବ ଭଣି ହେ । ୪ ।



ବାଲ୍ମୀକିଙ୍କ ଉକ୍ତି

( ଏହୁ କାହାରମଣୀମଣିରତନ—ବୃତ୍ତେ )

ଭବଶୋଭନ ଭାବନା ତଳେ କରନା । କାଳେ ଖେଦ ବପଦଙ୍କୁ ମନେଭରନା ।ପଦ। ଭୁବନମୋହନ ଗୁଳ ଭବନେମୋର । ଅଭ୍ରବ ନ ହେବ କେଉଁ କଥା ତୋହର । ହବକତ ନ କୁଅ ବରବରନା । ୧ । ବୈକୁଣ୍ଠମଣ୍ଡଳୀ ବକ୍ଷ ବାମା ତୁ ପରା । ତୋତେ କେ କଷଣ ଦେବ ଜଗମି ଧରା । ଅଇ କରକରଜେ ମଞ୍ଜୀ ଚରନା । ୨ । ଜନକଋଷି ମୋ ମିତ୍ର ଥାଅ ମା ଜାଣି । ପିତାପର ରହ ମୋର ପାଶେ ତୁ ମଣି । ବୃଥା ଚିନ୍ତା ସହିତେ ବୃଢ଼ ମରନା ।। ପାଳବେ ଏ ଶିଷ୍ୟେ ତୋତେ ଭଉଣୀଭାବେ । ତୋଅଙ୍ଗଙ୍କୁ ସଦା ଶିରପରେ ଧରିବେ । ଅସ ବଇଟରେବ ଶିଶୁରୂରନା ।।



ମୃଗପକ୍ଷୀଙ୍କ ଗୀତ ( ଅଜ ନ ଜାଳ ନ ଭାଳ ଗଣି ବୃତ୍ତେ )

ମୃଗ ପାଇବ କାହିଁ ଏହାଙ୍କୁ, କନକପ୍ରତିମା ଘନଜିତକେଶା ଦଳ କେତକୀଦେହାଙ୍କୁ ହେ । ପଦ । କାହାର କାମିନୀ କୃଷ ଏ ଭାମିନୀ କି ନାମ ଅଟଇ ସ୍ଥିର । ଗଙ୍ଗାଶୋଭିଳ କି ଯାଉଛି ମଉଳ ନ ସହୁ ମିହିର କର ହେ । ୧ । ଅବା ରମ୍ଭା ରତି ମର୍ତ୍ତ୍ୟେ ତପସ୍ୱିନୀ କିବା ଖେଚରୀ ଅମ୍ବିକା । ଦଣ୍ଡ ପଡ଼ିରହୁ ଯାଉ ଏ ସଂଶୟ କାହାର ଜୀବଜୀବକା ହେ । ୨ । ଦେଖିଲ ଦେବ ଚିତ୍ତ ଲାଗିଲାଣି ଅଛି ଅଠାରେ ଯେମନ୍ତ ପକ୍ଷୀ । ହାଣିଲେତ ହାଣ ନ ରଖଇ ଜାଣ ପୁଣି ସେନାପାଏ ଝିଙ୍କି ହେ ॥ ରହିବ କି ଷଟପଦ ପଦ୍ମେ ଅମୃତ ସ୍ୱାଦେ ହେବୁ ପରବଶ । ନସ୍ୱା-ଦେବ ବଇଷ୍ଣବ ସୀତାପଦ ଶିରେ ଧରୁ କର ଛନ୍ଦ ହେ । ୪ ।



ବାଲ୍ମୀକି—ଶୁଣ ବାମାଗଣ ! ଏହୁ ନାରୀରତ୍ନ ଅଙ୍କବଳ ସିନା । ନାମ ସ୍ୱୀର ସୀତା ଜାଣ ଜନକଦୁହିତା ! କନକପ୍ରତିମା ଜନକ ଅଳଙ୍କୃ ସ୍ୱବାକାଳେ ମନାଇଣ ଷୁଲିତହିଁ କହୁ କାଳେ । ତୋର ଦେଵରଙ୍କ ପଢ଼ିବ ମୋ! ଅଳେ । ଅଙ୍ଗ ଝଷ ପଠାଇଛି ଆଣି, ପରେ ଶୁଣାଇବି ସମସ୍ତ କାହାଣୀ, କନ୍ୟାଭବେ ପ୍ରତିପାଳ ସ୍ୱୀକୁ ମନକଷ୍ଟ ହେଉ ତାର ଦୂର । ମା ସୀତା ! ଅଳ୍ପକାଳେ ସୁଫଳ ଫଳିବ ଭାଗ୍ୟବୃକ୍ଷେ; ଅଶ୍ରମରତ ଛତରୁଣ ପାଦପଙ୍କୁ ଘଟମାରେ ବଢ଼ାଇଣ ଶିଖ, ପୁତ୍ରମୁଖ ଦେଖିବା ଅଗରୁ ପାଇ-ଥିବୁ ତନୟର ପାଳନର ସୁଖ । ରହ ମାତାଗଣତୁଲେ ଶିଉହଷାସରେ ପକ୍ଷୀଗଣେ ! ନେଇଣ ଶୁଶ୍ରୂଷା ସରପଣା ପକ୍ୱଫଳ ରସାଳ ଏହାରେ ।

( ସମସ୍ତେ ସୀତାଯେନ ପ୍ରସ୍ଥାନ )



ଲକ୍ଷ୍ମଣଙ୍କ ଗୀତ-( ପଙ୍କଜାକ୍ଷି ରେ—ବୃତ୍ତେ )

ଲେଖିଥିଲୁ ମୋ ଭାଲେ ରେ ଅନ୍ଧବନ୍ଧ । ମାତାଙ୍କୁ ଘୃତ ବନେ ତେଜିବ ହେନଇ । ପଦ । ନ ଲୋକ ପ୍ରାଣ, ନଚଳୁ ପୁଣ । ବନ୍ଧୁଙ୍କୁ କେଉଁ ସୁଖ ଦେଖିବା ପାଇଁ । ୧ । ଏକା ବନରେ, ଶନ୍ତାମନରେ । କାହୁଁ ସ୍ୱରେ ଡକଲେ

ଋଷିତନସ୍ଥୀ । ୬ । ଭାଇଙ୍କ ପାଶେ; କେଉଁ ସାହସେ । କହିବ ସୀତାଗ୍ରତ ଅସିଛ ମୁହିଁ । ୩ । ଏଠାବେ ନାଥ, ଅନାଶ୍ରୟ ପଥ । ମୋ ଅଭେ ବସିଛନ୍ତି ଭ୍ରଷରୁ ବଇ । ୪ ।



ରାମଙ୍କ ଉକ୍ତି । ( କେ ରକ୍ଷାକରବ—ବୃତ୍ତେ )

କହ ରେ ଲକ୍ଷ୍ମଣ କସ କହୁଅଛ ପ୍ରିୟା ମୋର । ଯେକାଳେ ବଜନେ ତେଜ ଫେରିଲୁ ତୁ ସାରବର । ପଦ । ମୋ ଗୁଣ ଶୁଣି କୁଣ୍ଡରେ ଜରକୁ ଥୋଇ ଗଣ୍ଡରେ । ବ୍ରହ୍ମାଣ୍ଡମଣ୍ଡିନୀ ନେଇ ତେଜୁଥିବ ଗାରଧାର । ୧ । ଧରଣୀଧୂଳ ଭୂଳକା କରଣ ଋଷି ବାଳକା । ଗଣୁଥିବ ଲୋତୁ ଥିବ- କେବେଶେ ବଳ ଖାବେଶ୍ୱର । ୨ । ଘଡ଼ ଘଡ଼ ଘର୍ଘସ୍ୱାସ ଛାଡୁଥିବ ନାଗ୍ୱଭଣ । ବୋଡୁ ମୋ ସ୍ୱଜବଭିବ ଦେବା ସବେ୍ୟ ଦଣ୍ଡଧର । ୩। ଭ୍ରଷ ରେ ସୌମିତ୍ରି ମୋତେ, ଅଭ ନ ପାଇବ ସୀତେ । ବଇଷ୍ଣବ ବୋଲେ ଗୀତେ ଚନ୍ଦ୍ର ମୋ ନୁହଇ ସ୍ଥିର । ୪ ।



ଲକ୍ଷ୍ମଣଙ୍କ ଉକ୍ତି । ( ଥାଅ ଗୋ ହଂସଗମନା—ବୃତ୍ତେ )

ଭାଇ ଯା ଅଛନ୍ତି କହ ସୀତା ମାତା ମୋତେ । କହିଲେ ସହିବନାହିଁ ବସୁଧା ସହିତେ । ପଦ । ନଜେ ଅରଜଛ ଯାକୁ, ଅନ କେ ଭ୍ରେଟିବ ତାକୁ । ଅନ୍ୟ ରାଜ କନ୍ୟାକର ଧର ଧୀର ଚନ୍ଦ୍ରେ । ୧ । ତା ନ ହେଲେ ବେଭେ ଭ୍ରଷ, ଏହିକ୍ଷଣି ଯାଇଁ ଦାସ । କାନନୁ ଜାନକୀ ଅଣି ଦେବ ତୋ ଅଗ୍ରତେ । ୨ । ପରକଥା ସ୍ୱତେ କର, ତେଜିଲ କୋଦଣ୍ଡ- ଧାସ୍ୱ । ଏବେ ମରୁଅଛ ଙ୍ଗୁର କ ଭାଳ ଅରତେ । ୩ । ଯେତେ ବୁଝାଇଲି ଚଳେ, ନ ଶୁଣିଲ କର୍ଣ୍ଣିବଳେ । ଅନ୍ୟଥା ନ ହେବ ବଇଷ୍ଣବ ଭ୍ରଷେ ଗୀତେ । ୪ । ।



ରାମ—ଶୁଣ ଅନୁଜ ଲକ୍ଷ୍ମଣ ! ବନୁ ବନଜାକ୍ଷୀକି ମୁଁ ଫେରାଇ ଆଣିଲେ,
ବ ବୋଲିବେ ମୋତେ ପ୍ରଜାଗଣ । ଲୋକରେ ଦାଣ୍ଡେବ ମୁଣ୍ଡ

ନ ପାରିବ ଟେକି, ଅନରାଜକନ୍ୟା ପାଣି କରନ୍ତୁ ଗ୍ରହଣ, କିନ୍ତୁ ବିଭାକାଳେ ମଧୁଶଯ୍ୟା ଅଳେ, ସୀତାପାଶେ ଅଛି ସତ୍ୟକରି, ତାର ବିନୁ କେବେ ନ ଛୁଇଁବ ଆନ ନାରୀ ।

( ଲକ୍ଷ୍ମଣଙ୍କର ମେଲାଣି )

ବଶିଷ୍ଠଙ୍କୁ ଡାକି, ରାମ ଅଶ୍ୱମେଧଯାଗ କରିବାର ବିଚାର ।

ରାମ—ଶୁଣନ୍ତୁ ଗୁରୁ ମହାଶୟେ ! ବ୍ରହ୍ମବଧ ପାପଭୟେ ଭାବିଅଛି ଅଶ୍ୱ-ମେଧ କରିବାର ପାଇଁ, କିପରି ହୋଇବ ତାହା ଦିଅନ୍ତୁ ଆଦେଶ ।

ବଶିଷ୍ଠ—ରଘୁପତି ! ପତ୍ନୀବିହୀନେ କିପରି ହେବ ଧର୍ମକାର୍ଯ୍ୟ, ଯଦ୍ୟପି ସୀତାସମାନରେ ଏକ ସୁବର୍ଣ୍ଣ ସୀତା ଗଢ଼ାଇ ପାରନ୍ତି, ତେବେ ସେ କାର୍ଯ୍ୟ କରିବାପାଇଁ ହେଉନ୍ତୁ ଉଦ୍ୟତ ।

( ବଶିଷ୍ଠଙ୍କର ପ୍ରସ୍ଥାନ )

ରାମ ଲକ୍ଷ୍ମଣଙ୍କୁ ଡାକି କହିବାର ।

ରାମ—ବତ୍ସ ଲକ୍ଷ୍ମଣ ! ଡାକ ବିଶ୍ୱକର୍ମାଙ୍କୁ ଏକ୍ଷଣି ସହସ୍ରେମାତ୍ର ସୁବର୍ଣ୍ଣ ସମର୍ପି ତାଙ୍କୁ, ସୀତାସମ ଦେବ ଗଢ଼ି ସୁବର୍ଣ୍ଣପ୍ରତିମା ଏକ-ଗୋଟି, ତାହା ଘେନି ଯାଗକାର୍ଯ୍ୟ କରିବଇଁ ମୁହିଁ ।



ଲକ୍ଷ୍ମଣ ବିଶ୍ୱକର୍ମାଙ୍କୁ ଡକାଇ ସୁବର୍ଣ୍ଣସୀତାଗଢ଼ାଇବା ଓ ରାମଙ୍କର ଯାଗ ଆୟୋଜନ ।

ଏଣେବନେ ସୀତାଙ୍କର ଯୋଡ଼ିଏ ପୁତ୍ରଜାତହେବା, ଓ ବାଲ୍ମୀକି ତାଙ୍କ ନାମ ନବ କୁଶ ଦେବାର ।

ଏକଦିନେ ସୀତା କାନ୍ଧେ ଦୁଇପୁତ୍ରଙ୍କୁ ଘେନି ବାଲ୍ମୀକିଙ୍କ ପ୍ରତି ଉକ୍ତି ।

( ନମସ୍ତେ ଜଗତପତି ଅଗତି ଗତିଦାୟକ—ବୃତ୍ତେ )

ତବ କୃପା ହେତୁ ତାତ ପାଇଲି ଏ ବେନି ସୁତ, ଭେଟ ପିତ ।ପଦା ନେଇ ଏହି ବେନି ପୁତ୍ରେ, ବିଦ୍ୟା ପଢ଼ାଅ ତୁରିତେ । ଯଶ ଘୋଷିବା ଜଗତ ।୧। ଦେଲ ନବ କୁଶ ନାମ, ପୂର୍ଣ୍ଣହେଲା ମନସ୍କାମ । ଯମଜ

ଏ କେଜାଭାତ । ୨ । ଦୁଃଖିଜନର ଦୁଖ ନେଇ, ଅଛନ୍ତି ଏ ଜାଣ ପିତ । ତାତ ସ୍ନେହ ଏ ବଞ୍ଚିତ । ୩ । ଯେଜଣ ରାଜମୁକୁଟ, ମସ୍ତକେ ମଣ୍ଡିଲେ ଜଟ । ବୈଷ୍ଣବର ଏ ଚରିତ ।। ୪ ।



ବାଲ୍ମୀକିଙ୍କ ଉକ୍ତି । ( ହର ହର ବୋଲ—ବୃନ୍ଦେ )

କାହିଁପାଇଁ ଝିଅ ବଢ଼ାଇଛୁ କହ ପାଠ ପଢ଼ାଇବା ପୁଅଙ୍କୁ । କଷ୍ଟେ ତୋହ କଷ୍ଟ ନାଶ ନଷ୍ଟ ହେବ ଦେଖିଲେ ଭୂମ୍ୟାଙ୍କ ନାଟକୁ । ପଦ । ନୂଅପୁଅ ବୋଲି ନବ ନାମ ଦେଲି ମନେ ମନେ ଭାଇ ଅଣ୍ଠକୁ । କୁଶବନୁ ଜନ୍ମ ତେଣୁ କୁଶ ନାମ ଶୁଣାଇଛି ଏ ଜନସ୍ତକୁ । ୧ । ଅସ୍ତ୍ର ଶସ୍ତ୍ର ମନ୍ତ୍ର ଶାସ୍ତ୍ର ଶିଖାଇବା ଚଳନାଟକ ପ୍ରପାଠକୁ । ଧରୁ ଧନୁବାଣ ତପୋବନ ସହ ରକ୍ଷା କରିବେ ମୋ ମଠକୁ । ୨ । ଚଳ ରେ ବାଳକେ ଖେଳ କାହିଁଭୁକେ ମସ୍ତକେ ବାନ୍ଧଣୀ ଜଟକୁ । ବଇଷ୍ଣବ କହ ତପ ଅସେ ମୁହିଁ ଯାଉଅଛି ଚଳକୂଟକୁ । ୩ ।।

ବାଲ୍ମୀକି ନବକୁଶଙ୍କୁ ମଠ ଜଗାଇ ଚିତ୍ରକୂଟେ ପ୍ରସ୍ଥାନ ।



ସ୍ୱକର ସ୍ୱକରସ୍ତ୍ରୀଙ୍କ ପ୍ରବେଶ ।

( ଧାଇଁଅ ଧାଇଁଅ ଧାଇଁଅ—ବୃନ୍ଦେ )

ପୁ—ଅ ରଣିମା ସ୍ନେହଅ ।
ସ୍ତ୍ରୀ—କରେ କାହିଁକି ହଉଚୁ ହାଲିଅ ।
ପୁ—ଅଲେ ରଜାଘର କଥା ଜାଣିଚୁ ।
ସ୍ତ୍ରୀ—କରେ କଅଣ ଖବର ଅଣିଚୁ ।
ପୁ—ଯାଗ ହବ ବୋଲି ନହର ବାହାର ଲାଗିଛନ୍ତି କେତେ ମୂଲିଅ
ସ୍ତ୍ରୀ—କଏସେ ସେ ଯାଗ କରୁଛି ।
ପୁ—ରଜା ବାହ୍ମଣ କୁଅଟେ ମାରଛି ।
ସ୍ତ୍ରୀ—ପାପ ହେବ କି ବାହ୍ମଣ ନାଶରେ ।
ପୁ—ନାଶି ପଠାଇଛି ବନବାସରେ ।

ସ୍ତ୍ରୀ—ଈଶ୍ୱରଯା ନ ଥାଇ ଶୁଭକାମ କହ କରିବ କେମନ୍ତେଅଲିଅ ॥
ପୁ—ଗୋଷ୍ଠା କରିଛି ପୁନାବେ ମାଇ ।
ସ୍ତ୍ରୀ—କିରେ ତହିଁରେ କି ଫଳ ପାଇ ॥
ପୁ—ଯାଗ କରିବ ତା ସଙ୍ଗେ ବସି ।
ସ୍ତ୍ରୀ—ଷୀର ଘୃତ ପେଜେ ମନ ଖୁସି ।
ପୁ—ବଡ଼ଲୋକଙ୍କର ସରବସୁନ୍ଦର କଳାକୁ କହିବେ ନାଲିଅ ॥
ସ୍ତ୍ରୀ—ଅମର ସେଥିରୁ କଅଣ ମିଳିବ ।
ପୁ—ଅଭ ଷୀର ପିଠା କିଏ ଗିଳିବ ।
ସ୍ତ୍ରୀ—ଋଷି ବାହ୍ମଣଙ୍କଠାରୁ ବଡ଼ ।
ପୁ—ସେତ ସାଗର କରନ୍ତି ଚଢ଼ ।
ସ୍ତ୍ରୀ—ଅଭ କିସଖାଇ ଫୁଲେଇବୁ ଲୀହ ଅଅରେ ଗାଲୁଅ ଗୁଲିଅ
ପୁ—କେତେ ଜରଣ ହେଉଛି ଭଣ୍ଡାରେ ।
ସ୍ତ୍ରୀ—ଯାଅ ବସିଥିବୁ ସେଇ ପିଣ୍ଡାରେ ।
ପୁ—ହେଉ ହେଉ ତେବେ ମୁହିଁ ଯାଉଛି ।
ସ୍ତ୍ରୀ—ତୋର ପାଟିରୁତ ପାଣି ବହୁଛି ।
ପୁ—ବଇଅ ବୋଲେ ସେଇଅ ହେଲେ ନୃଖୁସୁ କି ହେବ ତେଲିଅ

—›(○)‹— ( ଉଭୟଙ୍କର ପ୍ରସ୍ଥାନ )

ବଶିଷ୍ଠ ରାମ ଲକ୍ଷ୍ମଣ ଓ ଶତ୍ରୁଘ୍ନାଦଙ୍କର ପ୍ରବେଶ,
ଅଶ୍ୱମେଧଯାଗ ଆରମ୍ଭ, ରାମଙ୍କର ଗୀତ ।
( ଶୁଣ ଲୋ ସୁମିତ୍ରା—ବୃତ୍ତେ । )

ଶୁଭ ଲଗ୍ନ ଘନ ଯାଅ ରେ ବହନ ଯଜ୍ଞ ଅଶ୍ୱ ରକ୍ଷା ଅର୍ଥେ । ଅଶ୍ୱ ମସ୍ତକରେ ବୀରପତ୍ର ବାନ୍ଧି ଫେରାଇ ଅଣ ଭରତେ । ଯେସ୍ତ ଦସ୍ୟୁ ଧରିବ । ତାକୁ ରଣରେ ଜୟ କରିବ । ୧ । କାଶ୍ମୀର କାମ୍ବୋଜ କୁରୁକ୍ଷେତ୍ର ମତ୍ସ୍ୟ ଖଲ୍ଲାଟ ବେଲାଟ ଅଢ । ତଳହଟ ମରହଟ ଗୁଜୁରାଟ କାଞ୍ଚିସ କାମାକ୍ଷୀ ଭେଦ । ନାନା ଦେଶକୁ ଯାଅ । ସୈନ୍ୟ ସେନା ସହିତରେ ନିଅ । ୨ । ଯେଣୁ ବ୍ରହ୍ମବଧ କରିଛି ମୁଁ ତେଣୁ ଅବମ୍ବିଲ

ଅଶ୍ୱମେଧ । ଏହୁ ବଶିଷ୍ଠଙ୍କ ଅଦେଶେ ଜାଣୁଛ ଦୂର ହୋଇଯିବ ଖେଦ । ଧନୁ ଧରବ ନାହିଁ । ଯଜ୍ଞଶେଷେ ଜାଣିଥା ରେ ଭାଇ । ୩ । ଅକ୍ଷୁଣ୍ଣକଢାନା ଉଡ଼ାଇ ଅମ୍ଭେରେ ସୂର୍ଯ୍ୟବଂଶ ମାନ ରଖ । ଅର୍ଯ୍ୟ ସମାଜର ଏତ ନ୍ୟାଯ୍ୟ ଧର୍ମ ବାଜୁ ସଜ୍ୟୋ ଲକ୍ଷ୍ମଣଙ୍କ । ଭସ୍ମ କରନା ତଳେ । ବିପ୍ର ବଇଷ୍ଣବ ରଖେ ଭଲେ ।୪।

ଶତ୍ରୁଘ୍ନ—ଯାଉଛ ଅଗ୍ରଜ ! ଯେପନ ତୁମ୍ଭର ଅଦେଶ, ଯେପନ ଯଜ୍ଞ-ଅଶ୍ୱ ଭ୍ରମି ନାନାଦେଶ, ଏତେମ ଶୀଘ୍ରମରେ ହେବ ପରବେଶ । ପଦରଜ ଏଅ ଦାସ ଶିରେ । ( ପ୍ରସ୍ଥାନ )

ବଶିଷ୍ଠ—ସ୍ୱଲ୍ପ ଶ୍ରମ କରବାକୁ ଅଛ କେତେ କାର୍ଯ୍ୟ ଅନୁଷ୍ଠାନ, ଅଶ୍ୱ ସରକ୍ଷଣେ ଗଲେ କୁମାର ଶତ୍ରୁଘ୍ନ, ମନେ କଛ ଶୋଚନ ନ କର, ଶେଷ ହୋଇଅଛ ଯଜ୍ଞ ଅଧିବାସ କାର୍ଯ୍ୟଭାର ।

( ସମସ୍ତଙ୍କର ପ୍ରସ୍ଥାନ )

ଲବକୁଶ ବୀରବେଶେ ତପୋବନରେ ଭ୍ରମଣ
କରୁ କରୁ ଲବର ଗୀତ ।
( କହ ରେ ଅଙ୍କୁର—ବୃନ୍ଦେ )

ଭାଇ କୁଶ ବାଲ୍ମୀକିଙ୍କ ଅଦେଶ ଶିରେ ଧର ରେ । ଭ୍ରମିବା ଅନନ୍ଦେ ତପୋବନ ରକ୍ଷାକର ରେ । ପଦ । ଫେରିଯାଇ ମାତା କୋଳେ । ମିଳିବା ରେ ବେଳବାଳେ । ଦେଖିଲେ ଅମ୍ଭଙ୍କୁ ସେତ ସ୍ନେହେ ଯିବେ ପୂର ରେ ।୧। ଧର ଧନୁର୍ବାଣ କରେ । ବୁଲ ନିର୍ଭୟ ଚିତ୍ତରେ । ତଳେ କୁହୁଦରେ ଖାତର ନ ରଖି କାହାର ରେ ।୨। ଯେ ଏ ବନୁ ପୁଷ୍ପଲତା । ନାଶିବ ନ ମାନି କଥା । ଛେଦ ଶିର ତାହାର ପେଷିବା ଯମପୁରରେ ॥ ଅଦ୍ଭୁତେ ମର୍ମର ସ୍ୱର । ବାଜଇଲ୍ କର୍ଣ୍ଣରେ ମୋର । ବଇଷ୍ଣବ ଲକ୍ଷ ଦେଖି ଅସ ଶୀଘ୍ର ଫେର ରେ ।୪।

କୁଶ—ଭାଇ, ମୁହିଁ ଦେଖିଁ ଅପେ ଏହୁ ତପୋବନ ଦକ୍ଷିଣ ଦିଗରେ, ମହ ମହ ଶବଦ ଶୁଭଇ ଏତେ ସାହସ କାହାର; କେ ପଶି

ନାଶିଲା ବୃକ୍ଷଲତା । ( ଦେଖିଅଛି ) ଦେଖାଯାଏ ଏକ ଅଶ୍ବ-
ବର ତପୋବନ କଲା ଛାରଖାର, କସ ବନ୍ଧା ଅଛି ଶିର ।

ନବ—ସ୍ଥୂଳ କୁଶ ସର୍ବନାଶ ଘଟିଛି କାହାର, ଛଳେ ବଳେ ବେଗେ
ଅଶ୍ବେ ଧର, ତେବେ ଜାଣିବା ତୁରଙ୍ଗ ଅଟେ ସେ କାହାର ।

( ଅଶ୍ବକୁ ଧରିବା । )

ବାନ୍ଧ ଏହି ଶିଅଳ ଲତାରେ, ପଢ଼ କୁଶ ! ଶିରେ ଯାହା-
ବନ୍ଧା ହୋଇଥିଲା ତହିଁ ଲେଖାଅଛି କିସ ?

କୁଶ—ତେବେ ଶୁଣ ଭାଇ !

( ଖାର ପତ୍ର ପଠନ )

ଜୟ ଜୟ ଜୟ ଜଗତବିଜୟ ଅଯୋଧ୍ୟାଦେଶ ସମ୍ରାଟ ।
ଶିବଧନୁ ଧରି ସ୍ବବଶେ ସଂହାରି ସାଗରେ ଯେ କଲେ ବାଟ । ୧ ।
ବାଳିବନାଶନ ଜଗତଜୀବନ ବାନରେ ଯା ଅଙ୍ଗୀବନ୍ଧ ।
ନାମ ରାମଚନ୍ଦ୍ର ନୃପଗଣେ ଇନ୍ଦ୍ର ଯେ ନାମେ ମିଳେ ଅଭୟ ।୨।
ଅନୁଜ ଯାହାର ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ନରଙ୍କ ମଣି ।
ତାହାଙ୍କର ଅଟେ ଏହି ଯାଗଅଶ୍ବ ଯେ ଯାକୁ ଧରିବ ପୁଣି ।୩।
ଜୀବବଧ ପାପେ ଭୟଙ୍କର ଯେଣୁ କଲେ ଅଶ୍ବମେଧ କ୍ରତୁ ।
ଯେ ଧରିବ ତାଙ୍କ ଯଜ୍ଞବାଜ ଘୋଟି ଘଟିବ ନିଶ୍ଚେ ତା ମୃତ୍ୟୁ ।୪।
ଛାଡ଼ିବ ଛାଡ଼ିବ ନାହିଁଟ ସଂଶୟ କରିବେ ଅସ୍ତ୍ରପ୍ରକ୍ଷୟ ।
ବଇଷ୍ଟବ ଯେବେ ତୁରଙ୍ଗେ ଆସିବେ ରଣରଙ୍ଗେ କରି ଜୟ ।୫।



ନବ—ଭାଇ କୁଶ ! ଏବେ ଧନୁରେ ଗୁଣ ଚଢ଼ାଅ, ଏ ଅଶ୍ବକୁ ଚନ୍ଦନ
ବୃକ୍ଷରେ ବାନ୍ଧ, ଅଶ୍ବ ନ ପାଇ ଶତ୍ରୁଘ୍ନ ନିଶ୍ଚେ ଏଠାରେ ଉପଗତ
ହେବ ।

( ନେପଥ୍ୟେ ଶତ୍ରୁଘ୍ନ )—ଦୂତ ! ଦେଖ ଏହି ନିକଟରେ ଶୁଭେ
ଗୁଣଧ୍ବନି, କେଉଁ କେହି ଧରିଅଛି ଆମ୍ଭ ଯାଗଅଶ୍ବ, ଅଦୂରେ
ତୁରଙ୍ଗର ରବ, ଶତ୍ରୁ ଉପସ୍ଥିତ ବାଜିଲା ରେ ମୋର ।

## ଶତ୍ରୁଘ୍ନର ଲବକୁଶ ପାଖେ ପ୍ରବେଶ ।
( ଘ୍ରାଭ ଭୀମ କରବା ଙ୍କ ବୁଦ୍ଧି—ବୃତ୍ତେ )

ଫେଇଦଅ ବାଳକେ ଏ ବାଜ୍ଞ । ଅକାରଣେ କାହିଁପାଇଁ ଏ ବୁଦ୍ଧି ପାଞ୍ଚିଲ ପାଜ୍ଞ । ପଦ । ବାଳହୋଇ କାଳପୁର, ଯିବାର ଏ ବାଞ୍ଛା କର । ବନେ ଭ୍ରମ ଯତିବେଶ ପାଜ୍ଞ ।୧। ଅଯୋଧ୍ୟାଦେଶ ନରେଶ, ତାଙ୍କର ଏ ଯଜ୍ଞଅଶ୍ୱ । ମୋ କରେ ମରିବ କରେ ଅଜ୍ଞ ।୨। ମୁହିଁ ତାହାଙ୍କ କନିଷ୍ଠ, ଜାଣନା କି ଅରେ ଦୁଷ୍ଟ । ସର୍ପବଳେ କର ଭଲ ବୁଝି ।୩। କପାଇଁ କରୁଛ ଡେର, ଅରେ ବେନି ବନଚ୍ଛୁଆ । ବଇଷ୍ଟବ ପଦ ରଚେ ହେଜ୍ଞ । ୪ ।



## ଲବକୁଶଙ୍କ ଉକ୍ତି । ( ଜଅ ବନମାଳ—ବୃତ୍ତେ )

ଅକାରଣେ ଅଶ୍ୱ ଦେବୁ ନାହିଁ ଅମ୍ଭେ ବିଶ୍ୱଜୟୀ ବେନିଭାଇ ରେ । ତପୋବନ ରକ୍ଷାକରୁଅଛୁ ଶିକ୍ଷା ଋଷିଅଙ୍କ ଯିବେ ବନ୍ଧୁ ରେ ।ପଦ। ଦେହେଥିଲେ ଶକ୍ତି ଦେଖା ଯାଉ ଜୀତ ଭୀତ ଅଛ କାହିଁପାଇଁ ରେ ॥ ଜିତିଲେ ଅବଶ୍ୟ ନେଇଯିବୁ ଅଶ୍ୱ କ୍ଷିତିରେ ଖ୍ୟାତି ରଖାଇ ରେ । ବାଲ୍ମୀକି ବିନୁ କାହାକୁ ନ ମାନୁ ଶୁଣିଥାଅ କାନେ ଭୁହ ରେ । ଖେଳାଇଲୁ ଅସି କାଳଅ ନାଗକୁ କାହାର ସାହସ ପାଇ ରେ ।୨। ଜସଭ୍ରଞ୍ଜ ମନେ ଏହୁ ତପୋବନେ ମିଳିଲୁ ଭୁରଙ୍ଗ ନେଇ ରେ । ବଇଷ୍ଣବ ଭଣେ ମର ଅମ୍ଭ ବାଣେ ଜଳମ୍ଭରେ କାର୍ଯ୍ୟ ନାହିଁ ରେ ।୩।

ଶତ୍ରୁଘ୍ନ—ଶିଶୁମୁଖେ ଉଚିତ ବାତ ସହୁ ନୁହେଁ ଝେତେଭ,
ଲବ—କେମନ୍ତେ ଜାଣିଲୁ ଭୁହ ଜୀତଜନ ଅମ୍ଭେ ।
ଶତ୍ରୁଘ୍ନ—ଶିଶୁହୋଇ ହିଂସାକର ଜଳେ ନାହିଁ ଡର,
ଲବ—ଜଣାଯିବ ଯାଉପଣ ଧର ଧନୁଶର ।
ଶତ୍ରୁଘ୍ନ—ଝେଳା ହୋଇ ଇଚ୍ଛରେ ପାହାଡ ଚୂରିବାକୁ,
ଲବ—ହେଲା ନାହିଁ ଏବେ ସଜଷ୍ଟୁଅ ମରିବାକୁ ।

ଶତ୍ରୁଘ୍ନ—ସେଉ ବୀରଗଣେ ଅଛ କରନାହିଁ ଡେର
ନବ—(ଲବ କୁଶ) ମୋହନାସ୍ତ୍ର ମାର ବେଗେ ବାଲ୍ମୀକି ସୁମର

( ଯୁଦ୍ଧେ ଶତ୍ରୁଘ୍ନ ପତନ )



ଚରଗଣେ ରାମଙ୍କୁ ଜଣାଇବା ( କଂସ ଅଙ୍ଗାରେ—ବୃତ୍ତେ )

ଶୁଣନ୍ତୁ ଅଯୋଧ୍ୟାପତି ଯାହା ଘଟିଛି ବିପତ୍ତି ଅତି ଅଦଭୁତ ସେହି କଥା । ଛାଣି ହେଲେ ନାନାଦେଶ ତପୋବନେ ପରବେଶ ହୋଇ ହଜାଇଲୁ ତହିଁ ଚେତା ହେ । ମହିମା ।୧। ବେଳଗୋଟା ଯଜ୍ଞବାଜ ଯେମନ୍ତ କାଳ ବିକାଳ ବନେ ବାନ୍ଧିଲେ ଅମ୍ଭର ଅଶ୍ୱ । ଶିରେ ଜଟା ବିଭୂଷଣ କରେ ଅଛି ଧନୁର୍ବାଣ ଦୁହେଁ ଦେହେ ବୋଳିଛନ୍ତି ଭସ୍ମ ହେ । ମହିମା ।୨। ବାଜି ମାଗନ୍ତେଣ ତାଙ୍କ ଦେଖାଇଲେ ଗଳଗାଣ୍ଡି ରଣେ ସାଜି ଅମ୍ଭର ସହିତ । ଲାଗିଲା ଘୋର ସମର ଧରଧର ମାର-ମାର ବନ୍ଧୁ ସେନା ସୈନ୍ୟ ହେଲେ ହତ ହେ । ମହିମା ॥ ଶେଷରେ ଶତ୍ରୁଘ୍ନ ପ୍ରାଣ ସଂହାରିଲେ ମାରି ବାଣ ତ୍ରାଣ ପାଇ ଆସିଲୁ ପଳାଇ । ଦ୍ୱିଜ ବଇଷ୍ଣବ ଗିର ଏଥକୁ ଉପାୟ କର ନିଜ ମାନ ରଖ ରଘୁସାଇଁ ହେ । ମହିମା । ୪ ।

ରାମଙ୍କ ଶୋକ । ( କେତେଣ ଗଲ ଚଣ୍ଡ ମୁଣ୍ଡ—ବୃତ୍ତେ )

ଛାଡିଗଲୁ ଶତ୍ରୁଘନ ଭାଇରେ ମୋତେ ଭୁଲି ରେ । ପଦ । ଛାର ଯଜ୍ଞ ସୁତ ହେଲେ ତୋ କୃତାନ୍ତ ଏ ନିନ୍ଦା ଘୋଷିଲା ମହୀ ରେ ।୧। ଶୁଣିଲେ ଏ କଥା ଭ୍ରମିଯାଏ ମଥା ଚେତା ତଳେ ନ ରହଇ ରେ ।୨। ଯାଅ ରେ ଭରତ ଲକ୍ଷ୍ମଣ ତୁରତ ସୈନ୍ୟଦଳ ସଙ୍ଗେ ନେଇ ରେ ।୩। ନାଶି ଯଜ୍ଞବାଳେ ପେଷ କାଳଅଳେ ଅଶ୍ୱେ ଆଣ ମୁକୁଳାଇ ରେ ॥ ଶତ୍ରୁଜିତ କେଉଁ ଅମ୍ଭରେ ଉଡ଼ାଅ ବଇଷ୍ଣବ ରସେ କହିବେ । ୫ ।



ଭରତ—ସାଜ ରେ ଲକ୍ଷ୍ମଣ ! ଶୀଘ୍ର ଚନ୍ଦ୍ର ଧ୍ୱଜରଥ,ଶଙ୍ଖ ଘଣ୍ଟା ଛେଲ
ଭଈ କୋନ୍ତ, ବେଗେ ରଥେ ରଖ ରଖ ଭ୍ରାତ । ଛାର ବାଳ-

କର୍ଣ୍ଣ ଶକ୍ତି ଦେଖିବା କେମନ୍ତ ? ମାରଛନ୍ତି ଶତ୍ରୁଘ୍ନ ଆଦିଙ୍କୁ, ଅମ୍ଭ
କରେ ଯିବେ ଆଜ ଶମନପୁରକୁ, ସେତାମାନେ ଅନ ଜାଣ
ପାରନାହିଁ ମନେ, ବପଦେ ଅଧୀର ହେଲେ ବୁଦ୍ଧି ନାଶଯାଏ,
ଜମ୍ବୁସ୍ୱମ ଧ୍ୱନିକର ଚଳ ରେ ନିର୍ଭୟେ ।

ଲକ୍ଷ୍ମଣ—ହେ ଅଜ୍ଞା ! ଅସ ଶୀଘ୍ର ସାଜୁଛ ମୁଁ ରଥ, ଶୂରଗଣେ ଅଗେ
ଅଗେ ଦେଖାଅ ରେ ପଥ, କାହିଁ ମରୁଅଛି ମୋର ଭ୍ରାତ ।
( ସମସ୍ତଙ୍କର ପ୍ରସ୍ଥାନ ) .



ଲବକୁଶର ଗୀତ-( ମେଲାଣି କରରେ ନନ୍ଦ-ବ୍ରଜେ )

ଶୁଣ ଭାଇ ଲବ ଭାଇ ନଦେ ଉଡ଼େ କା ରଥକେତନ । ବନଗିର ପୁର
ଉଠେ ମାର ମାର ଏହୁ ସ୍ୱନ ।ସଦା ଶୁଣି ସଗିଜତମ୍ବୁର, ମୁଖରୁ କି ସେ
ପାମର । ଧାମନ୍ତି ପତଙ୍ଗ ସବୁ ଅନଳେ ହେବେ ପତନ । ୧ । କର
ଆମ୍ଭେ ପ୍ରାଣପଣ, ନ ତେଜିବା ଅଜ ରଣ । ଶରଭର ତୂଣୀ କନ୍ଧେ
ସଜାଅ କର ଯତନ ।୨। ସ୍ମର ବାଲ୍ମୀକି ପଦ, ଜିଣିବା ଏ ମହାଯୁଦ୍ଧ ।
ଲଭିବା ନିଜ ନାମରେ ଅକ୍ଷୟ ଯଶ ରତନ । ୩ । ଯୁଦ୍ଧେ ହେଲେ
ପରାଜୟ, ତେବେ ତାର ଦେବା ହୟ । ଭୟ ନାହିଁ ଲେଶେ ବଢ଼ି
ଭଷେ ଏ ରସ ନୂତନ । ୪ ।

ଲବକୁଶ ସମୀପେ ଭରତାଦଙ୍କର ପ୍ରବେଶ ।

ଭରତ—କହ ରେ ବାଳକେ ତୁମ୍ଭ ନାମ ଅଟେ କସ ?
କୁଶ—ନାମେ କାର୍ଯ୍ୟ ନାହିଁ ଫଳେ ଜାଣିବୁ ଅବଶ୍ୟ
ଭରତ—ମଣିଛ କି ଅମ୍ଭଙ୍କୁ ରେ ଷଣ୍ଢନ୍ଦର ପଗ ?
କୁଶ—ରଣରେ ସବୁ କାରଣ ପଡ଼ଯିବ ଧଗ
ଭରତ—ମୃଗଶିଶୁ ନାଶେ ଯଶ ଲଭେ କି କେଶସ ?
ଲବ—ସମର ଦେଖନ୍ତେ ଯିବ ସେ ଜ୍ଞାନ ପାଶୋର
ଭରତ—ଅକାରଣେ କପାଁ ରେ ମରବ ଜଡ଼ାଯାଇ !

ଲବ—କିକାରଣେ ଅସିଛ ଏ ବୀରବେଶ ଧରୁ
ଭରତ—ଭଙ୍ଗିଯିବ କଳ ଯାଗଅଶ୍ୱ ଦିଅ ଫେରୁ
ଲବ—ଜଣିଲେତ ନେବ ଅରେ ଦେଖ ଭଲ କରି
ଭରତ—ହେଉ ତେବେ ବାଣଶିକ୍ଷା ଦିଅ ରେ ପରୀକ୍ଷା
ଲବ—ଭାଇ କୁଶ ଅସ୍ତ୍ର ପେଷ ଅଉ ନାହିଁ ରକ୍ଷା
( ଯୁଦ୍ଧେ ଭରତର ପତନ )



ଲକ୍ଷ୍ମଣ—ଦେଖୁ ଦେଖୁ ମାଇଲ ରେ ଭାଇଙ୍କ ମୋହର ?
ଲବ—କେତେ ଶକ୍ତି ଅଛି ଦେହେଁ ଦେଖା ରେ ତୋହର
ଲକ୍ଷ୍ମଣ—ଇନ୍ଦ୍ରଜିତ ବୀରକୁ ମୁଁ କରିଅଛି ନଷ୍ଟ
ଲବ– କେ ଜାଣେ ସେ କଥା ଏବେ ଚନ୍ଦ୍ରାକର ଇଷ୍ଟ
ଲକ୍ଷ୍ମଣ—ସେନାଗଣେ ଘେରିଯାଅ କରନାହିଁ ଡେର
ଲବ—କୃତାନ୍ତଶରକୁ କୁଶ ଦେଶ ମନ୍ତ୍ର କର
( ଯୁଦ୍ଧେ ଲକ୍ଷ୍ମଣଙ୍କର ପତନ )

କୁଶ—ଏହିକଥା ପାଇଁ ଏତେ କରୁଥିଲେ ହାଣ
ଲବ—ଅଣ ମୁକୁଟ କୁଣ୍ଡଳ ତାଙ୍କ ଧନୁବାଣ
କୁଶ— ଅବଶିଷ୍ଟ ପଳାଇଗଲେଣି ଡେରେ ସବୁ
ଲବ—ଯାଉ କିଛିକ୍ଷଣ ତାର କାରଣ ଜାଣିବୁ
କୁଶ—ଙ୍ଖୁଲ ଭାଇ ଯିବା ତେବେ ଜନନୀଙ୍କ ପାଶ
ଲବ—ତେବେ କପାଇଁ ବିଳମ୍ବ କରୁ ଅରେ କୁଶ ?



( ପ୍ରସ୍ଥାନ )

ଚରଗଣେ ରାମଙ୍କ ପାଶେ ସମାଚାର ଦେବାର ।

( ଅସକ୍ଷଏ ଯିବରେ-ବୃତ୍ତେ )

ଶୁଣ ଅମ୍ବ ଗିର ହେ, ପ୍ରଭୋ କୋଦଣ୍ଡଧର । ଚନ୍ଦ୍ରଧ୍ୱଜରଥ ଚଢ଼ି ବେନଙ୍କ୍ତ ମିଳିଲେ ରଣ ଭୂମିର ହେ । ପଦ । ଲବ କୁଶ ଦୁହିଁଙ୍କ ଭୁଲେ, ସହ ମୈତ୍ରୀ ସମର କଲେ । ସହ ନ ହୋଇଲେ ବାଳକଯୋଦ୍ଧାଙ୍କୁ

ତୁମ୍ଭେ ବେନି ସହୋଦର ହେ ।୧। କରୁ କରୁ ପ୍ରବଳ ରଣ, ହରାଇଲେ ସକଳ ସବାଣ । ଅନ୍ଧ ବର୍ଷସମ ତାଙ୍କ ଶରଜ୍ୱାଳା ସହିବ ଶକ୍ତି କାହାର ହେ ।୨। ଦେଖିବାକୁ କେଡ଼େ ସୁନ୍ଦର, ଅଛନ୍ତି ସେହି ଯତିର ବାଳ । ନବଦୂର୍ବାଦଳ ଶ୍ୟାମଳ ଯୁଗଳ ତନୁ ଅଟେ କି ସୁନ୍ଦର ହେ । ୩ । ଯୁଝିବାକୁ ଶକ୍ତି ଯେମନ୍ତ, ରୂପ ପାଇଛନ୍ତି ତେମନ୍ତ । ବଇଷ୍ଣବ ବୋଲେ ତାଙ୍କୁ ନିରେଖିଲେ ତରଳି ଯିବ ପଥର ହେ । ୪ ।



ରାମ—( କ୍ରୋଧେ ) କି କହିଲ ଗୁରୁଜଣେ ! ଏଡ଼େକ ସାହସ ପୁଣି ଋଷିସୁତଙ୍କର, ମାରିଲେ ସେ ଭରତ ଲକ୍ଷ୍ମଣେ, ହାଇ ରେ ଲକ୍ଷ୍ମଣ ଭ୍ରାଇକ ରେ ଗଲୁ ଲଙ୍କାରଣ ? ବାଣଶିକ୍ଷା ଗଲୁ ଭୁରେଇଲୁ ପ୍ରାଣହରାଇଲୁ । ହା ଭାଇ ଭରତ ! ଅହାରେ ଶତ୍ରୁଘ୍ନ କେତେ କେଡ଼େ ବିଶ୍ୱଜୟୀ ଯୋଦ୍ଧା ମଲ ବାଳକ ସମରେ ।



ହନୁମାନଙ୍କୁ ରାମଙ୍କ ଆଦେଶ-( ଚନ୍ଦ୍ରବଦନାରେ-ବୃତ୍ତେ )

ସାଜ ମାରୁତି ରେ ଆଜ ମୋ ପୁଷ୍ପକ ରଥ । ମଲେ ଲେ ବାଳକରଣେ ତପୋବନେ ଲକ୍ଷ୍ମଣ ଭାଇ ଭରତ ।ପଦ। କେଡ଼େ କେଡ଼େ ଯୋଦ୍ଧା ମାରିକଲେ ପଦା ଦୁଇଗୋଟି ଋଷି ସୁତ । ସିଦ୍ଧା ସିଦ୍ଧା ବଦାହେଲେ ଯମଆଳେ ଲେଖିକି ଥିଲା ବିଧାତ । ୧ । କହି ମନେ ରାଗ ବାନ୍ଧିଛନ୍ତି ଯାଗ ଅଶ୍ୱକୁ ନ ଦେଲେ ସେତ ! ଅଗ ନାଗରୁଣ୍ଡେ ହସ୍ତ ଭରିବାକୁ କେମନ୍ତେ ବଳାଇ ଚଉ ।୨। ଚଳ ଜାମ୍ବବାନ ପବନନନ୍ଦନ ସୈନ୍ୟ ସେନା ଘେନି ସାଥ । କରୁଅଛି ପଣ ନ ତେଜିବ ରଣ ବଇଷ୍ଣବର ରଚିତ । ୩ ।



ହନୁ—ଯେ ଆଜ୍ଞା ଦେବ ! ( ସମସ୍ତଙ୍କର ପ୍ରସ୍ଥାନ )

ନବ କୁଶ ସୀତାଙ୍କୁ ବୁଝାଇବା-( ନମସ୍ତେ ପ୍ରଚଣ୍ଡୀ-ବୃତ୍ତେ )

ମନଦୁଃଖେ ବଦା କର ଗୋ ଜନନି ତପୋବନ ରକ୍ଷା କରିବୁ । ଅରାତି ଗର୍ଜନ ଶୁଣିଲେ ଘନ ଘନ ବହିକ ତାହା ନିବାରିବୁ । ପଦ । ଋଷି ଯାଇ

ଛନ୍ତ୍ର ଖୁସିବରେ ଜଗାଇ, ତଙ୍କକୂଟେ ତପ କରିବାର ପାଇଁ । ନାଶି ଶନ୍ଦୁ ବନେ ଜାଣିଥା ମା ହେଲେ; ରଣ ଜୟକର ଫେରିବୁ । ୧ । ତୋ କରୁଣା ଥିଲେ କଣାଏ ମାତର, ନ କରିବୁ ହର ବ୍ରହ୍ମାଙ୍କୁ ଖାତର । ବାଲମୀକ ଅମ୍ଭ ଗୁରୁ ମହେଶ୍ୱର ତାଙ୍କ ପଦ ଶିରେ ଧରିବୁ ।୨ । ଘେନ ଧନୁବାଣ ବେନ ଭାଇ ଆଜ; ମାଗୁଛୁ ମେଲାଣି ସାର ବେଶ ସାଜ । ବଇଷ୍ଣବ ଭଜ ତୋ ନାମକୁ ହେଜ ଯମପୁରୁ ଲେଖା ଛଡ଼ିବୁଁ । ୩ ।



ସୀତା—ଶୁଣ ରେ ବାଳକେ ! ନ ଯୁଝି ନଯିଝି ଜଳ ନ କରିବ କାହାର ସଙ୍ଗରେ । ବାପ ରେ ! ବିଶ୍ୱଜୟୀ ହୁଅ ଧରି ଧନୁବାଣ ।

ଲବ କୁଶଙ୍କର ତପୋବନେ ପ୍ରବେଶ ।

ଦୁରସ୍ତୁ ଶ୍ରୀରାମ ସୈନ୍ୟ ଦେଖି ଗୀତ ।

( ତାକୁ ଯା, ଯା ବୋଲି କହଦେ ବୃତ୍ତେ )

କହ କାହିଁ ଥିଲେ ଏ ମୂରତି । ଏକାବେଳେ ଦୁଇରାମ ମରତ୍ୟେ କି ଜନ୍ମିଛନ୍ତି ।ପଦ। ଶ୍ରୀରାମଙ୍କ ସଦୃଶ, ଦଶନ୍ତ ଯତ ଶିଷ । ନର୍ମାଣିଛି କି ବିଧାତା ଏକ କରି ବିଶ୍ୱକାନ୍ତି । ୧ । ହୁଏ ଏ ଅନୁମାନ, କି ଏ ସୀତା-ନନ୍ଦନ । ତେଜନ୍ତିଲେ ଲକ୍ଷ୍ମଣ ବନେ ଥିଲେ ସେତ ଗର୍ଭବତୀ । ୨ । ନାହଲେ ଏତେ ବଳ, ଧରନ୍ତେ କି ଏ ବାଳ । ଅରୁଣ କିରଣ ସମ ଝଳକେ ନୟନ ଜ୍ୟୋତି । ୩ । କେମନ୍ତେ ଯୁଝିକୁ ହତ, କରିବେ ସୀତାନାଥ । ବଇଷ୍ଣବ କହ ଧରି ପାରିବେ କେସନେ ସ୍ତୁତି । ୪ ।



ରାମ ଲବକୁଶଙ୍କ ଉତ୍ତରପ୍ରତ୍ୟୁତ୍ତର ।-( ଶୁଣ ଲୋ ସୁଜାତ-ବୃତ୍ତେ )

[ରା]ରଘୁବଂଶରେନନ୍ଦନ କିସ ତୁମ୍ଭନାମ କେ ତୁମ୍ଭର ମାତାପିତା । ସରହର ଦେଶ କାହିଁ ତୁମ୍ଭ ବାସ କୁହ ଶୀଘ୍ରେ ସେ ବାରତା । ଦେଖି ତୁମ୍ଭ ମୂରତି । ମୋର କରଣ ହୁଅଇ ସ୍ନେହତା । (ଲ) ଶତ୍ରୁପଣେ ଆସି ପିଲ୍ଲୁ ପରିଚୟ ପଚାରୁ କିପାଇଁ କହ । କାହିଁ ତୋର ବାସ ବତା ତା ସନ୍ଦେଶ କେଉଁ ନାମଗୋତ୍ର ବହ । ଆରେ କୋଦଣ୍ଡପାଣି । ତାହା କର୍ଣ୍ଣେ ଥରେ

ଥାଉ ଶୁଣି । ୬ । (ରା) ମୁହିଁ ରାମଚନ୍ଦ୍ର ଅଯୋଧ୍ୟା ନରେନ୍ଦ୍ର ଦଶରଥ ନୃପବର । ଭାଙ୍ଗିବାରୁ ଶିବଧନୁ ସ୍ୱୟମ୍ବରରେ ଆଣିଛି ଜନକବାଳା । କେହୁ ନ ଜାଣେ ମୋତେ । ଯାର ପଣ ମୋ ଖ୍ୟାତ ଜଗତେ ॥ (ଲ) ନିଜର ପ୍ରଶଂସା ନିଜେ ବୋଲୁ ତୁଣ୍ଡେ ଭଣ୍ଡପଣ ବହୁକର । ରଣରେ ଶକତ ଜଣାଯିବ ଏଥି ସାର ଆହୁ କେଉଁପର । ତେବେ ପରତେ ଯିବା । କହୁ-ବାର କାରଣ ବୁଝିବା ॥ (ରା) ଅନୁମାନେ ମନେକରଇ ରେ ସୀତା ତେଜିଥିଲି ଏ ବିଜନେ । କାଳେ ମୋ କୁମର ହେବ ଦୁଇ ଯାର ତେଣୁ ଭାଷିଲି ବଦନେ । ରଣ କରିବି ନାହିଁ । ଦୟା ହେଲାଣି ତୁମ୍ଭଙ୍କୁ ଚାହିଁ ॥ (ଲ) ପରଘର ବୁଢ଼ା ନିଜସ୍ତ୍ରୀସ୍ୱ ଛାଡ଼ା ଅଟଇ ଯେବଣ ଜନ । ତାର ମୁଖେ ଲାଜ କାହିଁ ଅଛି ବୁଝି ଏ ଭାବ ଭାବୁଛୁ ମନ । ଏବେ ସମରେ ଡର । ପୁଅ ବୋଲି ନ ପକାରେ ସ୍ୱର ॥ (ରା) ସହଜେ ବାଳକ ଋଷିଙ୍କ ପାଳକ ତପୋବନ କର ରକ୍ଷା । ମୋର ସଙ୍ଗେ ଯୁଦ୍ଧ କରିବାକୁ ସାଧ କେବେ କଲ ଅସ୍ତ୍ରଶିକ୍ଷା । ଗୁରୁଦକ୍ଷିଣାକୁ ବହ । ପ୍ରାଣ ରଖ ଦେଇ ପରିଚୟ ।୭। [ଲ] ଆମ୍ଭେତ ବାଳକ ପାଳକ କାହାର ନାମ ଧରୁ ଯମ ସାମ୍ୟ । କାଳର ଭଙ୍ଗର ଦୁଇ ସହୋଦର ବାଲ୍ମୀକିମଠେ ଆଶ୍ରମ । ବଇଷ୍ଣବ କହଇ । ରଣ କର ଆଉ ବେଳ ନାହିଁ । ୮ ।

( ହନୁ ଜାମ୍ବବାନ ବନ୍ଦୀ, ଯୁଦ୍ଧେ ସେନାଗଣ ସହ ରାମଙ୍କର ପତନ
ଓ ଲବ କୁଶଙ୍କର ଧନୁମୁକୁଟାଦି ଗ୍ରହଣ )

ଲବ—ବାନ୍ଧ ଏବେ ଏମାନଙ୍କୁ ଦାଣ୍ଡେ ଖେଳିବାରେ ନେଇ
କୁଶ—ଜମ୍ବୁକଳଠାରେ ଆଉ ରହିବା କିପାଇଁ ?
( ହନୁ ଜାମ୍ବବ ସେନି ଲବକୁଶ ସୀତାପାଖେ ପ୍ରବେଶ )
ଲବ—ଦେଖ ମାତ ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନେ ମାରି
କୁଶ—ମା ! ଧନୁ କୁଣ୍ଡଳ ମୁକୁଟ ସୈନ୍ୟ ଆଣିଅଛୁ ଧରି
ସୀତା—କାହାକୁ ବାପରେ ତୁମ୍ଭେ କରିଲ ନିଧନ [ପତନ]
ଲବ—କହ ମାତ ସେମାନେ କି ଅଟନ୍ତି ଆମ୍ଭ ଜନ ।

ସୀତା ଚେତା ପାଇ ବେଦନ ( ହାଇରେ ଦୁର୍ଦ୍ଦଣ୍ଡ ବନ୍ଧ-ବୃତ୍ତେ )

ଏ କାଳ ଏ କାଳ ନବ ଏ କାଳ ଏ କାଳ ରେ । ଯବସାନ କାଷ୍ଟ-ଭବ ବୋଲି ଭାବଥିଲ ରେ । କୁମରେ । ୧ । ଜୀବଧବ ସଙ୍ଗେ ଏ ଜୀବନ ଯିବ ଜାଣ ରେ । ଜୀବଧବ ପୁର ମୋ ନିକଟ ହେଲା ପୁଣ ରେ । କୁମରେ ।୨। ନବୁଝି ନ ଶୁଝି କୁଶ ନାଶିଲ ପିତାକୁ ରେ । ସୁବାକାଳେ ବଳେ ଖଣ୍ଡ କରିଲ ମାତାକୁ ରେ । କୁମରେ ॥ ସାତସିନ୍ଧୁକୁ ଲଙ୍ଘିଲୁ ପବନନନ୍ଦନରେ । ଅଜ୍ଞାନ ବାଳୁତହାତେ ହେଲୁ ତୁ ବନ୍ଧନ ରେ । ହନୁ ।୪। ଜାମ୍ବବାନ ଭୁଲିଗଲ ଲଙ୍କାର ସମର ହେ । କେତେ ବଡ଼ ବୀର ତୁମ୍ଭେ ବୋଲିଅ ସ୍ୱାମିର ହେ । ମନ୍ତ୍ରି ॥ କହା ପଥ ନବ କୁଶ ତାତର ପାଶକୁ ରେ । ନରେକ୍ଷିବ ପତିମୁଖ ପୂରିବ ଆଶକୁ ରେ । ସୁତେ ॥ ସଜାଡ଼ି ଛଡା ନବ କୁଶ ଏବେ ରେ । ପତିସଙ୍ଗେ ଦେବ ଦାସ ବଇଷ୍ଣବ ଭାବେ ରେ । ସୁତେ ।୭।



ନବକୁଶଙ୍କର ପ୍ରବୋଧନା । ( ଅସ ଉଜ୍ଜଳ ସନ୍ତାନେ—ବୃତ୍ତେ )

ଅସ ମାତ ଦୋଷ ଷମି ଦେଖି ଯିବୁ ପିତାପାଶ । ତାତ କେବଣ ପଦାର୍ଥ ଜାଣିନାହୁଁ ଜନ୍ମ ଲେଶ । ପଦ । ଜାଣିନାହୁଁ ତାତ ସ୍ନେହ ଅଟଇ କେଉଁର କହ । ଜାଣି ଶୁଣି ପିତୃ ଘାତୃ ହୋଇ କେ କରିଛି ନାଶ ॥ ବେଭ୍ରୁ ଯେବେ ଆମ୍ଭ ଜାଣି, ଆମ୍ଭ କି ବିପଦ କିଣି । ଭିଳକ ଥାଆନ୍ତୁ କେତେ ବିଷକୁ ମଣି ପୀୟୁଷ ।୨। ହରଷେ ବିପଦସହି, ଶିରେ ମା ଗଳ ବରଷି । ଦୋଷୀ ନୋହୁ ସେ ଚରଣେ ବୈଷ୍ଣବଚରଣ ଭାଷି



[ନବକୁଶସହ ସୀତା ରାମଙ୍କ ପାଖେ ପ୍ରବେଶ ଓ ସୀତାଙ୍କର ବେଦନ]

( ବେଗେ ଯାଅ ଯାଅ ଲଙ୍କାପୁରରେ—ବୃତ୍ତେ )

ଯଷନାଥ ! ଯଗ ଶମ୍ଭୁନେ ବଳନ୍ତି ଚିତ୍ତ ହେ । ଅଧୀର ବନ୍ଧରେ ନନ୍ଦନ ଝଟଡାନେଷ ଛଅ ଏ ଦେଉ ବାଞ୍ଛିତ ହେ । ପଦ । କି ଅଭାବ [illegible] ଅଯୋଧ୍ୟା [illegible] ତା ଭୁଲିତ । ହେ ବନ

ବିହାର ବନେ ମରିବାକୁ ଲକ୍ଷ୍ମଣଙ୍କ ହାତେ ଦେଲ ହେ । ୧ । ବାଳ ବୟ
ସିନ୍ଧୁ ବାନ୍ଧି ନାଶିଥିଲ ପାପୀ ରାବଣ ସବଂଶେ । ସ୍ଥିର ଶିଶୁରଣେ
କେମନ୍ତେ ପଡ଼ିଲ ସଙ୍ଗେ ସେନା ଛିନ୍ନ ଭିନ୍ନ ହେ ।୨। ନବଦୂର୍ବାଦଳ
ଶ୍ୟାମଳ କୋମଳ ଚରଣେ ସେବିଲେ ମୁଁ ତ । ଭଣେ ଧୀରବାଣୀ କୋଳେ
ନେଇ ଟାଣି କାହିଁ ସେ କାଳ ଚରିତ ହେ । ୩ । ଏହା ଦେଖି ହୃଦ
ଫାଟି ନ ଯାଉଛି ରହିଛି ଏ ପାପଭୂତ । ବଇର କବଚା କାଳ
ବେଗେ ଛଡ଼ା ନନ୍ଦହାତେ ମୋର ସୁତ ରେ । ୪ ।



୧ [ ଚିତ୍ରକୂଟେ ବାଲ୍ମୀକି ପାଶେ ନାରଦଙ୍କ ପ୍ରବେଶ ଗୀତ ]

( ବଳନାହିଁ ଅଛ ଏ କଳିକାଳଠୁଅଙ୍କୁ—ବୃତ୍ତେ )

ତପକର ବସିଥା ପାପ ନେବ କି ମୁନି । ନବକୁଶ ହାତେ ନାଶ
ହେଲେ ରାମସହ ଭ୍ରାତ ବୀର ଶତ୍ରୁଘ୍ନ ତିନି । ପଦ । ଯାଗ ଅଶ୍ୱ
ନିମନ୍ତେ ରଣ, ହେଲା ଅଛି ହେ ତପୋଧନ । ସୀତା ରାମଭୁଲେ
ଛଡ଼ାରେ ପଠାନ୍ତି ଅହିଲୁ ଅମ୍ଭେ ଏ ବାର୍ତ୍ତା ସେନା । ୧ । ଯାତା
ମତେ କଲେ ବିବାଦ, ଚିତ୍ରକୂଟେ ଚଳ ନାରଦ । ବାଲ୍ମୀକେ
ଜଣାଅ ସେଠାରେ ଅଣାଅ ଚଳ ଚଳ ଅମ୍ଭ ବଚନ ମାନ । ୨ ।
ଶୂନ୍ୟଗାମୀ ହୋଇଣ ଚଳ, କରନାହିଁ ବିଳମ୍ବ କାଳ । ବଇଷ୍ଣବଗିର
ବାସ୍ତୁପ୍ରତିକାର ସୂର୍ଯ୍ୟବଂଶ ମାନ ନ ହେଉ ହାନି । ୩ ।

( ବାଲ୍ମୀକିଙ୍କର ତପୋବନେ ପ୍ରବେଶ )

ସୀତା—ଦେଖ ନେଜେ ପିତା ତବ ଦୁହିତା ଦୁର୍ଗତି
ବାଲ୍ମୀକି—ଧୈର୍ଯ୍ୟଧର ଧୈର୍ଯ୍ୟଧର ସୀତା ମହାସତୀ ।
ସୀତା—ପତିସଙ୍ଗହରାମୀ ହୋଇ ବଞ୍ଚିବି ସ୍ୱର୍ଗରେ
ବାଲ୍ମୀକି—ନବକୁଶେ ସେନା ମଠେ ଚଳ ତୁ ଶୁଭରେ
ସୀତା—କେଉଁମୁଖ ଦେଖିବାକୁ ଯିବ ଏଥୁ ଫେରି
ବାଲ୍ମୀକି—ବଞ୍ଚାଇବ ବଂଶ ସବୁ ଜୀବନ୍ୟାସ ବାରି

(ସୀତାସହ ନବକୁଶଙ୍କର ପ୍ରସ୍ଥାନ ଓ ମୁନିଙ୍କ ଦ୍ୱାରା ସମସ୍ତଙ୍କ ଅଭିବାଦନ)

## ରାମ ପ୍ରତି ଋଷିଙ୍କ ପ୍ରଶ୍ନ ।

ରାମ—କାହାର କୁମର ମୁନି ଲବ କୁଶ ବେନି
ବାଲ୍ମୀକି—ଶିଷ୍ୟ କେହି ହୋଇଥିବେ ପରେ ଜଣାଇବ ଛନ୍ତି
ରାମ—ଯାଗ ଶେଷ ହେଲ ଋଷି ଯିବ ମୋର ପୁର
ବାଲ୍ମୀକି—ଅଶ୍ୱ ଘେନି ଯାଇ ବେଗେ ଯାଗ ପୂର୍ଣ୍ଣ କର
ରାମ—ମେଲାଣି ହେଉଛୁ ମୁନି କର ଆଶୀର୍ବାଦ
( ସମସ୍ତେ ଚରଣେ ପତନ )
ବାଲ୍ମୀକି—କାଲ ଯିବ ଅଯୋଧ୍ୟାକୁ ଘେନି ଶିଷ୍ୟବୃନ୍ଦ ( ପ୍ରସ୍ଥାନ )
ପ୍ରଭାତ ହୁଅନ୍ତେ ଲବକୁଶ ଘେନି ବାଲ୍ମୀକି ଅଯୋଧ୍ୟାରେ ପ୍ରବେଶ ।



ଲବକୁଶଙ୍କୁ ସଭାରେ ଋଷିଙ୍କ ଆଦେଶ-( ମାନକରଦାନ ଧନ-ବୃନ୍ଦେ )

ମହାନାଟକକୁ ପାଠକର ଲବ କୁଶ ରେ । ବସିଛନ୍ତି ରାଜଋଷି ଶୁଣି ହେବେ ତୋଷରେ ।ପଦ। ଆଳାପ ଆଚର ଶୀଘ୍ର କର ପରକାଶରେ । ଯାର ଶ୍ରବଣେ ନ ରହେ ଦେହେ ପାପ ଲେଶ ରେ ।୧। ଆଦ୍ୟପ୍ରାନ୍ତ ଏହିଁ ଦୁହେଁ ଗାଇ କର ଶେଷ ରେ । ବାଳକାଳୁ ଶିଖାଇଛି ରଖିଯିବ ଯଶ ରେ ।୨। ହଣନି ସଭାକୁ ହଜାଉଥିବ ଦୁଇ ଦିଷ ରେ । ପୂର୍ଣ୍ଣହେଉ ମନବାଞ୍ଛା ବଇଷ୍ଣବ ଭାଷ ରେ । ୩ ।

ଲବ କୁଶଙ୍କର ରାମାୟଣ ଗାନ-( ଧୀରେ ଘେନ ଧୀରେ-ବୃନ୍ଦେ )

ଆହେ ରାମ ଦଶରଥ ଘରେ । ଜନ୍ମି ଶିବଧନୁ ଭାଙ୍ଗି କରେ । ସୀତା ବାଲ୍ଲ ହେଲେ ଅଯୋଧ୍ୟା ମିଳିଲେ ମାତାଛଳେ ଗଲେ ବନରେ । ସଙ୍ଗେ ଭାଇଭାର୍ଯ୍ୟା । ଗଲେ ରାଜ୍ୟ ସୁଖ କରି ତେଜ୍ୟା । ୧ । ସୁବର୍ଣ୍ଣ ହରିଣ ଯାକେନ୍ତ ମାରି । ମାୟୀ ଦୈତ୍ୟ ସୀତା କଲା ଚୋରି । ବାଳିକି ମାରିଲେ ସୁଗ୍ରୀବେ ତାରିଲେ ସେତୁ ବାନ୍ଧି ସିନ୍ଧୁ ହେଲେ ପାରି । ଲଙ୍କା ପୁର ଧ୍ୱଂସି । ରାବଣ ସଗୋଷ୍ଠ ପ୍ରାଣେ ନାଶି । ୨ । ତହୁଁ ସୀତା ଆଣି ରଘୁମଣି । ଅଗ୍ନିରେ ପରୀକ୍ଷା କଲେ ପୁଣି । ଲୋକ ଅପବାଦ ସହି ନ ପାରିଣ ବନେ ଲକ୍ଷ୍ମଣ ତେଜିଲେ ଜାଣି । କ୍ରମେ ସୀତା ସତୀ, ଋଷି-

ମଠେ ଯାଇଁ ପ୍ରବେଶନ୍ତି । ୩ । ବାଲ୍ମୀକି ସଦନେ ନବକୁଶ । ହରଣ କରନ୍ତେ ଯାଗଅଶ୍ୱ । ପିତା ପୁତ୍ରଙ୍କର ହୋଇଲା ସମର ଦ୍ୱିଜ ବୈଷ୍ଣବର ଏହୁ ଭାଷ । ନ ଧରବ ଦୋଷ । ଏ ମହାନାଟକେ ହେଲା ଶେଷ ।୪।



ରାମଙ୍କର ଗୀତ-( ମେଲଣି କର ରେ ନନ୍ଦ-ବୃତ୍ତେ )

ଚଳିଲ ଚଳିଲ ମୁନି ନବକୁଶ ମୋର ସୁତ । ତବ କରୁଣାରୁ ଋଷି ମୋତେ ଏ ହେଲେ ପ୍ରାପତ । ପଦ । ଜନମେ ଜନମେ ସୁଝି ନ ପାରବ ଋଣକୁ ତ । ମନ ଫେଇ ଲାଗ କାହିଁ ଛନ୍ତି ଜନକ ଦୁହିତ ।୧। ଆଦେଶେ ତୋ ଦାଶରଥି, ଅମ୍ଭର ସଦନେ ଛନ୍ତି । ମନଯାନେ ସେହି ହବ ଏ ସଭାରେ ପ୍ରଗତ । ୨ । ଦସ୍ୟୁବନ୍ଧୁ ହେ ତାପସ, ମୋ ଅଙ୍କୁ ସେହି ଅସ । ତେବେ ନାଶ ହେବ ଚିନ୍ତା ପୂରୁବ ଚିନ୍ତା ।ତ ।୩। ଥାଅ ନବ କୁଶ ବେନି । ଅସବେ ତୁମ୍ଭ ଜନନୀ । ଜନକ ଝିରେ ମଜ୍ଜି ବଇଷ୍ଣବର ରଚିତ । ୪ ।



ମୁନି ସୀତାପାଶେ ପ୍ରବେଶ-( ମଦନ ନଉକା ପରେ-ବୃତ୍ତେ )

ଅସ ମା ଜନକ ଜେମା । ଆଜ୍ଞାଦେଲେ ଦାଶରଥି ସବୁ ଦୋଷ କର କ୍ଷମା । ପଦ । ନାହିଁ ଆଉ ମନଦୁଃଖ । ଅଯୋଧ୍ୟା ସଭାରେ ଯାଇଁ ନିରେଖିବ ପଦ୍ମମୁଖ ।୧। ନବକୁଶେ ତାଙ୍କୁ ଦେଇ । ଅସିଅଛି ମାତ ତୋତେ ଏଥୁ ଘେନିଯିବା ପାଇଁ ।୨। ଅରୁଣ ଚରଣଧୂଳି । ପଡ଼ନ୍ତେ ପବିତ୍ର ହୋଇଯିବ ସେ ଅଯୋଧ୍ୟା ସ୍ଥଳୀ । ୩ । ବଇଷ୍ଣବ ଭକ୍ତି ରସେ । ମୁନି ପତ୍ନୀଠାରୁ ବିଦା ମାଗି ଚଳିଲେ ହରଷେ । ୪ ।



ସୀତାଙ୍କ ପ୍ରତି ରାମଙ୍କ ଉକ୍ତି-( ଜୟ ରଘୁନାଥ-ବୃତ୍ତେ )

ରେ କୋକଇରଙ୍କା ଲୋକଅପବାଦେ ଦେଇଥିଲି ତୋତେ ବନ-ବାସ । ଦେଖନ୍ତୁ ସରବେ ମିଳି ଏହିଠାବେ ସକଳ ସଂଶୟ ଯାଉନାଶ । ଅନଳ ପରୀକ୍ଷା । ଦିଅ ବାରେ ମୋତେ କୁଟିଳାକ୍ଷା ।୧। ବୈକୁଣ୍ଠ ଈଶ୍ୱର

ହୋଇ ବାର୨ କେତେକଷ୍ଟ ଦେଉଅଛ ମୋତେ । ଏ ସଭାରେ ଲାଜ ଭୟ ନାହିଁ ଅଛି ସତୀଙ୍କୁ ଯେବେ ମୋ ଅଛି ସତେ । ଫାଟି ଯାଉ ଧରା । ନ ସହିବ ଆଉ ଏତେ ଭାର ॥ ସତୀ ବାକ୍ୟ ଶୁଣି ଫାଟିଲା ଧରଣୀ ଚଳିଲେ ମୈଥିଳୀ ମାତାକୋଳ । ଦୁଇଫାଳ ମଧ୍ୟ ଗଲା ଏକ ହୋଇ ରାମ କରେ ଅଛି ସୀତାଚୂଳ । ମାଅ ମାଅ କହୁ । ମଧ୍ୟରେ ଲୋଟନ୍ତି ଦୁଇ ଭାଇ ।୪। ଶାନ୍ତକଲେ ବାଲମୀକି ତପୋବନ୍ତ ନବକୁଶେ ରାମ କୋଳକର । କରିଥିବ ବୋଲେ ସର୍ବେ ଶୋକ କଲେ ନ ପାଇବ ଆଉ ଫୁର ଫୁର । ଯାଅ ନିଜରାଜ୍ୟ । କଲକର୍ମ ନରେ କର ଭୋଗ । ୫ ।



## ରାମଙ୍କର ନବକୁଶଙ୍କ ଆଦେଶ ।

( ଜମ୍ବୁ ପ୍ରତାପୀ ମତ୍ସ୍ୟନରେଶ—ବୃତ୍ତେ )

ବତ୍ସ ଅଯୋଧ୍ୟାରେ ନବ ରାଜା । ନୋହୁ କାତର ପାଳ ପରଜା। ପୁତ୍ରସମ କରିଣ ପାଳିବ ପ୍ରଜାଗଣେ । କାହାର ଅନିଷ୍ଟ ଚିନ୍ତା ନ କରଣେ । ଚଳିଲି ମୁଁ ରାଜ୍ୟ କରି ତେଜ୍ୟା । ୧ । ନନ୍ଦୀଗ୍ରାମେ ଲୁହ ବତ୍ସ ନରପତି । ଭ୍ରାତୃକରେଖ କେବେହେଁ ନ ପଶିବ କ— ଦୋଷ ଦେଖି ଦେଉଥିବୁ ସଜା ।୨। ସେନ ଏହି ମୁକୁଟ କୁଣ୍ଡଳହାର ହାର । ତୀର୍ଥଯାତ୍ରା ଅର୍ଥେ ମୁହିଁ ହୋଇଲି ବାହାର । ଯାଗ ଯୋଗ କରୁ ସର୍ବେ ଯା ଯା ।୩। ଦଇବଲିଖନ କେ କରିବ କେବେ ଆନ । ହରି ଶରେ ହରି ହରି ବୋଲ ସଜ୍ଜନ । ବଇ ଯେନ୍ତୁ ସ୍ୱର୍ଗେ କରେ ପୂଜା ।୪।

ସମାପ୍ତ ।



କଟକ, ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ।